# କୃଷ୍ଣ କଥା



ଶ୍ରୀ ଉପେନ୍ଦ୍ର ନାଥ ପ୍ରଧାନ ବି. ଏଙ୍କ ଦ୍ୱାରା

ସଙ୍କଳିତ ଓ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

କଟକ

ମୁକୁର ଯନ୍ତ୍ରାଳୟରେ

ଶ୍ରୀ ବ୍ରଜସୁନ୍ଦର ଦାସଙ୍କ ଦ୍ୱାରା

ମୁଦ୍ରିତ ।

*Price ten annas.* ମୂଲ୍ୟ ୦ • ୳/

# ଉତ୍ସର୍ଗପତ୍ର



ଯେଉଁମାନେ 'ମନବଚନକର୍ତ୍ତବ୍ୟ'ରେ ଧର୍ମଭାବ, ଈଶ୍ୱର ନିର୍ଭରତା ଓ ଅଗାଧସ୍ନେହ ପ୍ରଦର୍ଶନ କରି ଲୀଳାସାଙ୍ଗ ପର୍ଯ୍ୟନ୍ତ ଅହିଂସା-ବ୍ରତ ଓ ଶାନ୍ତି-ପଥ ଅବଲମ୍ବନ ପୂର୍ବକ କୋମଳ-କଠିନସଦ୍‌ଗୁଣ ଦ୍ୱାରା ଜୀବନ୍ତ ଆଦର୍ଶରୂପେ ଗ୍ରାମଗ୍ରାମାନ୍ତରସ୍ଥ ସହସ୍ର ସହସ୍ର ସଂସାରୀ ନରନାରୀଙ୍କର ଶ୍ରଦ୍ଧା ଓ ଭକ୍ତି ଆକର୍ଷଣ କରୁଥିଲେ ଓ ଅମର ଧାମରେ ଥାଇ ଆଜି ସୁଦ୍ଧା କରୁଅଛନ୍ତି, ଏବଂ ଯାହାଙ୍କର ଶିକ୍ଷା ଓ ଦୀକ୍ଷା ବକ୍ଷସ୍ଥଳରେ ନିର୍ଲିପ୍ତ ନ ରହି ତାହାଙ୍କର ପଦାଙ୍କାନୁସରଣ କରିବାପାଇଁ ମୋର ଏ କ୍ଷୁଦ୍ର ପ୍ରାଣରେ ଅନବରତ କାର୍ଯ୍ୟ କରୁଅଛି;

ସେହି ଦିବ୍ୟାତ୍ମା ପରମାରାଧ୍ୟ ୰ ପ୍ରାଣବନ୍ଧୁ ପିତୃଦେବ ଓ ଗୋଲୋକେଶ୍ୱରୀ ମାତୃଦେବୀଙ୍କର ତର୍ପଣାର୍ଥ 'କୃଷ୍ଣକଥା'ମୃତ ଅର୍ପଣ କଲି । ଇତି ।

# ମୁଖବନ୍ଧ



ଭକ୍ତକବି ଧନକୃଷ୍ଣ ଉତ୍କଳରେ ସୁପରିଚିତ ହେଲେହେଁ ତାଙ୍କର ସେ କାଳର ଅନୁପେକ୍ଷଣୀୟ ଆଦିରସାତ୍ମକ ଭଙ୍ଗୀ କତିପୟ ଆଧୁନିକ ଶିକ୍ଷିତଙ୍କ ରୁଚିର ଅନୁକୂଳ ହେଉ ନ ଥିବାରୁ ରସକଲ୍ଲୋଳ ବର୍ତ୍ତମାନ ଶିକ୍ଷା ଓ ପଠନର ଉପଯୋଗୀ ହେବା ନିମିତ୍ତ ଉକ୍ତ-ଭଙ୍ଗୀ-ବିବର୍ଜିତ ହୋଇ କବିଙ୍କର ଆଦର୍ଶ ଭକ୍ତିଭାବ ଓ ସୁଲଳିତ ଭାଷାକୁ ସମ୍ବଳ କରି ଗଦ୍ୟ ଗ୍ରନ୍ଥରୂପେ 'କୃଷ୍ଣକଥା' ନାମରେ ପ୍ରକାଶିତ ହେଲା । କବିଙ୍କର ଭାବକୁ ବିଶଦ କରିବାପାଇଁ ମୁଁ ଯଥାପରୋନାସ୍ତି ଯତ୍ନ କରିଅଛି । ଅତଏବ ଏ ପୁସ୍ତକ ସର୍ବଶ୍ରେଣୀୟ ପାଠକ ବିଶେଷତଃ ନବଶିକ୍ଷିତମାନଙ୍କର ସୁଖପାଠ୍ୟ ଓ ସୁପାଠ୍ୟ ହୋଇ ଜଣକ ହୃଦୟରେ ସୁଦ୍ଧା ଯଣାକପାଇଁ ହେଲେ ଭଗ-ବଦ୍ଭାବ ସମ୍ଭବ କଲେ, କବିଙ୍କର 'ପୀୟୂଷବର୍ଷଣ' ଚେଷ୍ଟା ଅଧିକତର ସଫଳ ହେବ ଏବଂ ମୁଁ ମଧ୍ୟ କୃତାର୍ଥ ହେବି ।

ଗୁଇଁବସା,
୧୬-୧୦-୨୪ } ଗ୍ରନ୍ଥକାର ।

ନମୋ ନୀଳାଚଳନାୟକାୟ

# କୃଷ୍ଣକଥା ।

## ପ୍ରଥମ ପରିଚ୍ଛେଦ ।

ହେ ସାଧୁଜନମାନେ, ଏକମନ ହୋଇ ନୀଳାଚଳନାୟକ ଶ୍ରୀଜଗନ୍ନାଥଙ୍କର ରୂପ ଅନୁଧ୍ୟାନ କର । ପ୍ରଭୁଙ୍କର ଚନ୍ଦ୍ରକାନ୍ତିଜିଣି କମନୀୟ ଶ୍ରୀମୁଖ, କମଳନୟନ ଓ ତନ୍ନିହିତ କମଳଚୁମ୍ବୀ ଭ୍ରମର ସଦୃଶ କଳାତୋଳା, କପାଳରେ ସ୍ୱର୍ଣ୍ଣପ୍ରଭ ତ୍ରିପୁଣ୍ଡ୍ରକ-ରେଖା ଏବଂ ସୁରଙ୍ଗ ଅଧର-ମାଧୁରୀ, ଏସମସ୍ତ ଅବଲୋକନ କରି ଭକ୍ତର ଶରୀର ଓ ହୃଦୟ ପୁଲକିତ ହୁଏ । କର୍ଣ୍ଣରେ ମକରକୁଣ୍ଡଳ, ଲଲାଟପଟ୍ଟରେ ତିଳକ, କରରେ କଚଟୀ, ବାହୁରେ ବାହୁଟୀ, ହୃଦୟରେ ପଦକ ଓ କମ୍ବୁ-କଣ୍ଠ-ବିଲମ୍ବୀ ମଣିହାର-ମଧ୍ୟ-ମଣି-ଦୀପ୍ତିମାନ୍ କୌସ୍ତୁଭ, ଏବଂ କଳିତ ଲଳିତ କୁସୁମମାଳା ଦର୍ଶନକରି କାହାର ମନ ତ୍ରୈଲୋକ୍ୟ-ନାଥଙ୍କର ବଶ ଓ ବାଧ୍ୟ ନହୁଏ ? ନାନାରତ୍ନ-ଫଳସମନ୍ୱିତ-କଳ୍ପବୃକ୍ଷ ସଦୃଶ ମୟୂର—ପୁଚ୍ଛ-ପରିଶୋଭିତ ଶ୍ରୀଅଙ୍ଗ, କଷ୍ଟ-ଦୁଷ୍ଟ-ବିନାଶନ ଶଙ୍ଖଚକ୍ର, କନକ କିଙ୍କିଣୀ, କଟିଭୂଷଣ ପୀତାମ୍ବର, ଓ କରୁଣାକଟାକ୍ଷ, ଏମାନ ଭକ୍ତମାନସରେ ଅପାର ଆହ୍ଲାଦ ଦାନକରେ । ଈଦୃଶ ମୋହନ ବେଶରେ ନୀଳାପର୍ବତରେ ବିହାର କରୁଁ କରୁଁ ଲୀଳାମୟ ଦିନେ ଏହିପରି ଚିନ୍ତାକଲେ, "ଆମ୍ଭେ ଅବତାର ଗ୍ରହଣ-ପୂର୍ବକ କଂସ ନାଶକରି ମହୀଭର ଉଶ୍ୱାସ କରିବୁଁ । ପୂର୍ବେ ଯେପରି ମତ୍ସ୍ୟାଦିରୂପ ଧାରଣ କରିଥିଲୁଁ, ସେହିପରି ପୁଣି ନନ୍ଦ-ଗୃହରେ କପଟ ବ୍ରଜବାଳକରୂପେ ଅବତୀର୍ଣ୍ଣ ହୋଇ

ପଶୁପାଳକର କାର୍ଯ୍ୟ କରିବୁଁ ଏବଂ ଲୀଳାଛଳରେ ଗୋପରେ ବିହାରକରି କଂସାଦି ଯଥେଚ୍ଛାଚାରୀ ସମାଜକଣ୍ଟକ ଜନଶତ୍ରୁମାନଙ୍କୁ ନିଧନ କରିବୁଁ ।" ଅଭୟ-ବରଦ କରୁଣାସାଗର ଇଚ୍ଛାମୟ ହରି ଏହିରୂପେ ସୃଷ୍ଟିରକ୍ଷାର୍ଥ ଦୁଷ୍ଟଦଳନ ଓ ସନ୍ଥପାଳନ ନିମିତ୍ତ ମାନବଦେହ ପରିଗ୍ରହ କରି ମୁକ୍ତିକାମୀ ଜନଗଣଙ୍କୁ କୈବଲ୍ୟ ଦେବାପାଇଁ ଉତ୍ସୁକ ହେଲେ ।



## ଦ୍ୱିତୀୟ ପରିଚ୍ଛେଦ ।



ତେଣେ କଂସ-ପ୍ରତାପ ଦିନକୁ ଦିନ ଦୁଃସହ ହେଲା । ଜନମଣ୍ଡଳୀ ଅପାର ଯାତନା ଭୋଗକଲା ଏବଂ ଲୋକସମାଜ ସନ୍ତ୍ରସ୍ତ ଓ ଚଞ୍ଚଳ ହେଲା । କଂସର ଯଥେଚ୍ଛାଚାରର ଅବୈଧ ନିର୍ମମ କାର୍ଯ୍ୟାବଳୀରେ ଧରିତ୍ରୀବକ୍ଷ ବିକୃତ ହେଲା । ତେଣୁ ଯେପରି ପିତୈକସହାୟା କନ୍ୟା କାହାରି ଦ୍ୱାରା ଉତ୍ପୀଡ଼ିତା ଓ ପ୍ରହୃତା ହେଲେ, କ୍ରୋଡ଼ସ୍ଥ ଶିଶୁର ଦୁଃଖ ଓ ଆର୍ତ୍ତନାଦ ଏବଂ ନିଜ କ୍ଷତବିକ୍ଷତ ଶରୀରର ଜ୍ୱାଳା ସହି ନପାରି ପିତାସମୀପରେ କୁହେଇ କୁହେଇ ଆତ୍ମଦୁଃଖ ନିବେଦନାନ୍ତର ପିତାର ହୃଦୟରେ ସମବେଦନା ଜାଗ୍ରତ କରେ, ଏବଂ ପିତା ସମର୍ଥ ହୋଇଥିଲେ, କାଳ-ବିଳମ୍ବ ନକରି ଯେପରି କନ୍ୟାର ଯାତନା-ନିରାକରଣର ଉପାୟ ଅବଲମ୍ବନ କରେ, ତଦ୍ରୂପ ଜୀବମାତା ଧରିତ୍ରୀ ବ୍ରହ୍ମାଣ୍ଡସୃଜନକାରୀ ବ୍ରହ୍ମାଙ୍କର ଆଶ୍ରୟ ଗ୍ରହଣ କଲେ ଏବଂ ପିତାମହ କନ୍ୟାର ଯନ୍ତ୍ରଣାରେ ସହାନୁଭୂତି ଅନୁଭବ-ପୂର୍ବକ ଶ୍ରୀଜଗନ୍ନାଥଙ୍କଠାରେ ସେ ବିଷୟ ଗୁହାରି କରି ତାହାଙ୍କର କୃପାରକ୍ଷା କଲେ । ବ୍ରହ୍ମାଙ୍କର ନିବେଦନ ଶ୍ରବଣାନ୍ତେ ବାରିଧିତଟ ବିହାରୀ ପୁରୁଷୋତ୍ତମ କୃପା-ଲୋଳ ଲୋଚନରେ ଅନାଇଁ କହିଲେ, "ତୁମ୍ଭେ କିଛି ବିସ୍ତର ନାହିଁ ଓ ଚିନ୍ତାକରନାହିଁ । ଆମ୍ଭେ ଯଦୁକୁଳରେ ଜାତ ହୋଇ କଂସର ପ୍ରାଣ ଘେନିବୁଁ । ତୁମ୍ଭେ ଏବେ ଗମନକର ଆମ୍ଭର ଚିତ୍ତାକର୍ଷକ ଗୋପକେଳିର ସକଳ ଆୟୋଜନ ସାଙ୍ଗକର ।" କୃପାସିନ୍ଧୁ-

ଙ୍କର ଏହିରୂପ ଆଜ୍ଞା ପାଇ ବିଶ୍ୱକର୍ତ୍ତା ବିଧାତା ପରମ ଆନନ୍ଦରେ ସ୍ୱସ୍ଥାନକୁ ପ୍ରତ୍ୟାବୃତ୍ତ ହେଲେ ଏବଂ ଅନତିବିଳମ୍ବେ ଆଦେଶାନୁଯାୟୀ ସକଳ ଆୟୋଜନ ସମ୍ପାଦନ କଲେ। ତହୁଁ ଶ୍ରୀଜଗନ୍ନାଥ କଚ୍ଛୁଦନ ଅନ୍ତେ ଦେବକୀ-ଦେବୀଗର୍ଭସ୍ଥ ହୋଇ କେତେକ ଦିନ ପରେ ଦିନେ ନିଶୀଥରେ ଭୂମିଷ୍ଠ ହେଲେ। ଜନ୍ମ କାଳରେ ଅନିନ୍ଦ୍ୟସୁନ୍ଦର ଦେବ-ଦର୍ଶନ ଶରବେଶ ଦୃଷ୍ଟ ହେଲା; କଂସଠାରେ କ୍ରୋଧହେତୁ ହସ୍ତରେ ଚକ୍ର ବିରାଜମାନ, ପାପତାପ-ତମୋନାଶି-କୋଟିଶଶଧର ଜିଣି-କୌସ୍ତୁଭ କଣ୍ଠରେ ଦୋଳାୟମାନ, ଓ ନୀଳମେଘ-କୋଳରେ ବିଜୁଳିସମ କଟିତଟରେ ପୀତବସନ ଦେଦୀପ୍ୟମାନ ହୋଇଥିଲା। କର୍ଣ୍ଣର ମକର-କୁଣ୍ଡଳତେଜରେ ଗଣ୍ଡମଣ୍ଡଳ ଝଟକୁଥିଲା। ମସ୍ତକରେ ମଣିମୟ ମୁକୁଟ, କରରେ କଙ୍କଣ ଓ ଚରଣରେ ନୂପୁର ବିମଣ୍ଡିତ ହୋଇଥିବାରୁ ଶ୍ରୀଅଙ୍ଗ କାନ୍ତିରେ କୋଟିକାମକୁ ନିନ୍ଦା କରୁଥିଲା। ଗୁଣଗ୍ରାହୀ ଭକ୍ତଭାବରେ ବିଭୋର ହୋଇ କୋମଳ-ବକ୍ଷରେ ଯେଉଁ ଶ୍ରୀବତ୍ସପଦଚିହ୍ନ ବହନ କରିଥିଲେ, ସେ ଲାଞ୍ଛନ ମଧ୍ୟ ହୃଦଦେଶରେ ଲାଗି ରହିଥିଲା।

ଏବଂ ରୂପ ସନ୍ଦର୍ଶନ କରି ଜନକଜନନୀ ଅତି ଆଶ୍ଚର୍ଯ୍ୟାନ୍ୱିତ ହୋଇ ସ୍ତୁତିବନ୍ଦନ ଆରମ୍ଭ କଲେ। ଗୋସାଇଁ ଶ୍ରୀହରି ଅବଲୀଳାକ୍ରମେ ମାୟା ବିସ୍ତାରକରି ସେରୂପ ସଂହାର-ପୂର୍ବକ ବାଳମୁକୁନ୍ଦରୂପ ଧାରଣ କଲେ। ସେଠାରେ କଂସର ଯେତେକ ପ୍ରହରୀ ଥିଲେ, ତେତେବେଳେ କାଳ-ନିଦ୍ରାରେ କାହାରି ଚେତନା ରହିନଥିଲା।

ଉଗ୍ରସେନ ବସୁଦେବଙ୍କୁ କନ୍ୟାଦାନ କଲାପରେ, କଂସ କୌତୁକୀ ହୋଇ ଭଉଣୀ ଭିଣୋଇଙ୍କୁ ରଥରେ ବସାଇ ରଥଚାଳନ କରୁଥିଲା। ସେତେବେଳେ ଆକାଶମଣ୍ଡଳରୁ ସ୍ୱୀୟ ବିନାଶର କୋମଳଗମ୍ଭୀର ଦୈବବାଣୀ ଶ୍ରବଣକରି କଂସ କ୍ରୋଧରେ ତତ୍କ୍ଷଣାତ ସେମାନଙ୍କୁ ହାଙ୍କୋଳୀ ଦେଇଥିଲା। ବର୍ତ୍ତମାନ ଶୁଭଲଗ୍ନର ଉଦୟ ହେବାରୁ ବନ୍ଧୁକାଳର ଶୃଙ୍ଖଳ ଆପେ ଆପେ ଫିଟିଗଲା। ସେହି ନିଶୀଥରେ ବସୁଦେବ ଶ୍ରୀଭଗବାନଙ୍କ ଆଜ୍ଞାନୁସାରେ ପୁଷ୍ପରୂପୀ ବାଳମୁକୁନ୍ଦଙ୍କୁ ଅତିଯତ୍ନରେ ବକ୍ଷରେ ଧରି ଗୋରଗଡରେ ଗମନ

କରୁଁ କରୁଁ ଉଗ୍ରସେନ ଆସି ଆଗରେ ପଥ ଓଗାଳିଲେ । ତହୁଁ ଭକ୍ତ-ବତ୍ସଳ ଭଗବାନ ଶଙ୍ଖଚକ୍ର ଗଦାପଦ୍ମ-ଧାରଣ-ପୂର୍ବକ ନିଜ ରୂପରେ ଭକ୍ତ ଉଗ୍ରସେନଙ୍କୁ ଦର୍ଶନ ଦେଇ ଗୋପରେ ନନ୍ଦଗୃହରେ ପ୍ରବେଶ କଲେ । ଦେଖ, ଦୈବଯୋଗେ ସେହିଲଗ୍ନେ ନନ୍ଦଙ୍କର ଗୋଟିଏ କୁମାରୀ ଜାତ ହେଲା । ବସୁଦେବ ମୁକୁନ୍ଦଙ୍କୁ ନନ୍ଦଗୃହରେ ସ୍ଥାପନକରି କୁମାରୀକୁ ପ୍ରତିଦାନରୂପେ ଗ୍ରହଣ କଲେ ଏବଂ ସତ୍ୱର ପ୍ରତ୍ୟାଗମନ କରି ନିଜର କାରାମନ୍ଦିରରେ ପ୍ରବିଷ୍ଟ ହେଲେ; ଦ୍ୱାର ରୁଦ୍ଧ ହେଲା; ଚରଣ ଶୃଙ୍ଖଳବଦ୍ଧ ହେଲା; ଏବଂ ସମସ୍ତ ପୂର୍ବବତ୍ ଅପରିବର୍ତ୍ତିତାବସ୍ଥ ସୂଚିତ ହେଲା । କୁଆଁ କୁଆଁ ବାଣୀ ଶୁଣି ରକ୍ଷକଗଣ ନିଦ୍ରା ତ୍ୟାଗକଲେ ଏବଂ ନିଶି ଶେଷରେ ସନ୍ତତି-ଜନ୍ମ-ସମ୍ବାଦ କଂସ-ଶ୍ରୁମୂଳେ ଜଣାଇଲେ । କଠୋର-ହୃଦୟ ନର-ରାକ୍ଷସ କଂସ ତ୍ୱରିତ ସେ ସ୍ଥାନରେ ଉପସ୍ଥିତ ହୋଇ କ୍ରୋଧରେ ଜଳି କହିଲା, "ସେ ଶିଶୁକୁ ତ୍ୱରକରି ମୋତେ ଦିଅ, ତୁମ୍ଭର କୋଳରେ ମୋର କାଳ ଜାତ ହୋଇଅଛି, କାରଣ ଦେବତାମାନେ ମୋତେ କହିଛନ୍ତି ଯେ, ତୁମ୍ଭର ଅଷ୍ଟମ-ଗର୍ଭଜାତ ସନ୍ତାନ ମୋର ପ୍ରାଣନାଶ କରିବ । ସୁତରାଂ ମୋତେ ଏ ଶିଶୁର ପ୍ରାଣ ବିନାଶ କରିବାକୁ ହେବ, ନୋହିଲେ ଅର୍ଥାତ୍ ଏଥିରେ ହେଳା କଲେ, ମିତ୍ର ତ ଦୂରର କଥା, ଶତ୍ରୁଠାରେ ମଧ୍ୟ ମୋର ଯଶ ହେବ ନାହିଁ କି, ପୌରୁଷ ପ୍ରକାଶ ପାଇବ ନାହିଁ ।" ଏହା ଶୁଣି ବସୁଦେବ ସବିନୟ ନିବେଦନ କରି କହିଲେ, "ହେ ଦେବ, ଦେଖନ୍ତୁ, ଶିଶୁ, କୁମାର ନୁହେ, କୁମାରୀ, ଅତଏବ କରୁଣାହୃଦୟ ହୋଇ ମୋତେ ଏ ଦୁହିତା ପାଳନର ଆଜ୍ଞା କରନ୍ତୁ; ବସ୍ତୁର ଦେଖନ୍ତୁ ଏ ଆପଣଙ୍କର ବୈରୀ ନୁହେ ।" କିନ୍ତୁ ଏତେ ଯତ୍ନ କରି କହିଲେ କଣ ହେବ, କଳାକୁ ଧଳା କରିବାକୁ ଏ ସଂସାରରେ କିଏ ସ୍ୱଜନ ଅଟେ ? କର୍ପୂର ଓ ଚନ୍ଦନ ଦେଇ ରସୁନକୁ ଲେପିଲେ, ସେ କି କେବେ ନିଜର କୁତ୍ସିତ ବାସନା ଛାଡ଼େ ? କୁଟିଳ, ଦୁଷ୍ଟ, ନାସ୍ତିକ, ମହାପାପୀ ଓ ଅବିବେକ ଲୋକମାନଙ୍କର ସ୍ୱଭାବ ଠିକ ସେହିପରି । ବିଷଧରକୁ ଦୁଗ୍ଧପାନ କରାଇଲେ, ତାହାର ବିଷମାତ୍ରା କେବଳ ବର୍ଦ୍ଧିତ ହୁଏ, ମାତ୍ର

ସ୍ୱଭାବ କି କେବେ ବଦଳେ ? ବସୁଦେବଙ୍କର କଥା ଶୁଣି ଅଳ୍ପବୁଦ୍ଧି କଂସ ମନରେ ଭାବିଲା, "କୁମାରୀ କଣ ମୋର ପ୍ରାଣ ସଂହାର କରିପାରେ ? ବିଷ୍ଣୁମାୟା ଦେବମାନଙ୍କୁ ଅଗୋଚର । ଜଣେ ଅବଳା ରମଣୀ ତ ମହାବଳୀ ବୈରୋଚନକୁ ନିଧନ କରିଥିଲା, ମୋହିନୀ କନ୍ୟା ମହାଯୋଗୀ ଶିବଙ୍କୁ କି ଦୁଃଖ ନ ଦେଲା ! ପୁଣି କାତ୍ୟାୟନୀ ମହିଷାସୁରକୁ ନିଧନକରି ଅସୁରକୁଳକୁ ଧ୍ୱସ୍ତବିଧ୍ୱସ୍ତ କରିଛି । ଏମାନ ତ ପୁରାଣପ୍ରସିଦ୍ଧ, ତେବେ ମୁଁ କିପରି ଏ କନ୍ୟାକୁ ମୋଚନ କରିବି ?" ଏହିପରି ଭାବି ମାରିବାପାଇଁ ଦୃଢ଼ସଂକଳ୍ପ ହୋଇ କୁମାରୀକୁ ଉପରକୁ ଟେକି ତଳେ ଥିବା ଶିଳାରେ କଚାଡ଼ନ୍ତେ, ଦେବୀ ଶୂନ୍ୟ ମାର୍ଗରେ ଉଭା ହୋଇ କହିଲେ "ଯେଣୁ ତୁ ଝିଜା କାରଣରେ ମୋ ପ୍ରତି ଚିତ୍ତରେ କୋପ କଲୁ, ତେଣୁ ତୁ ଅଚିରେ କାଳକବଳରେ ପଡ଼ିବୁ । ତୋର ହନ୍ତା ପ୍ରସୂତ ହୋଇଅଛି ।" ଏତକ ଶେଷ ହେଉଁ ନ ହେଉଁ ଦେବୀ ଅନ୍ତର୍ହିତ ହେଲେ । କଂସର ଚିତ୍ତ କୁଲାଳଚକ୍ର ପ୍ରାୟ ଭ୍ରମିଲା । ତତ୍ପରେ ମନରେ ଏକ ବୁଦ୍ଧି ପାଞ୍ଚି ଅଘା, ଶକଟା, ପୂତନା ପ୍ରଭୃତି ସମପ୍ରକୃତି ଅନୁଚର-ଅନୁଚରୀ-ବୃନ୍ଦ ହକାରି ଏମନ୍ତ ଆଜ୍ଞା ଦେଲା ଯେ, ଯେ ଯେଉଁଠାରେ କଅଁଳା ପୁଅ ଦେଖିବ, ସେ ତାକୁ ଯେମନ୍ତ ପ୍ରକାରେ ହେଉ ମାରିବାପାଇଁ ଚାକ ରହିବ । କଂସ ଆଜ୍ଞା ପାଇ ସେମାନେ ମଧ୍ୟ ସେହିକ୍ଷଣଠାରୁ ବାଳକ-ନାଶନର ଉପାୟମାନ ମନରେ ଚିନ୍ତା କରିବାକୁ ଲାଗିଲେ ଏବଂ ସଦ୍ୟଜାତ ଶିଶୁର ସନ୍ଧାନ କରିବାକୁ ତତ୍ପର ହେଲେ ।

ଏଣେ ନନ୍ଦଙ୍କର-ପୁତ୍ରଜନ୍ମ ଉପଲକ୍ଷରେ ନାନା ଉତ୍ସବ ଲାଗିଥିଲା । କେଉଁଠାରେ ଗୀତ, କେଉଁଠାରେ ନୃତ୍ୟ, କାହିଁ ବା ଦାନ, କେଉଁ-ସ୍ଥାନରେ ବା ଦରିଦ୍ର-ଭୋଜନ ଚାଲିଥିଲା । ସୂତିକାଗୃହର ଜାତକକର୍ମାଦି ଯାବତୀୟ ବିଧି ସମାରୋହରେ ସମ୍ପନ୍ନ ହେଉଥିଲା । ରାଜିଉତ୍ସବ ପାଇଁ ଏକ ଅପୂର୍ବ ପୁରୀ ରଚିତ ହୋଇଥିଲା । କନକଘଟ-ମାଳିନୀ, ସ୍ଫୁରିତଚନ୍ଦ୍ରାତପଶାଳିନୀ, କର୍ପୂର-ଚନ୍ଦନ-ଛଟା-ତୋରା, ରତ୍ନପ୍ରତିମା-ସ୍ତମ୍ଭସଜ୍ଜିତା ପୁରୀ ଅଳକା-ପୁରୀ ପରି ଜନମନ ହରଣ କରୁଥିଲା । ପୁଣି

ପ୍ରତିମାମାନଙ୍କରେ ଦୋଳି ଟେକି ସେଥିରେ କୁମାରଙ୍କୁ ଶୁଆଇ ଯଶୋଦା ଓ ଅନ୍ୟାନ୍ୟ ଗୋପାଙ୍ଗନାମାନେ ହୁଳହୁଳି ଦେଇ ଆନନ୍ଦରେ ମତ୍ତ ଥିଲେ । ବଳରାମ କିଛିଦିନ ଆଗେ ସେଠାରେ ଜନ୍ମିଥିଲେ । କ୍ରମେ ଦୁହେଁ ଏକସଙ୍ଗ ହେଲେ, ଏବଂ ଉଭୟଙ୍କର କଳା-ଧଳା ଶ୍ରୀଅଙ୍ଗ-ଶୋଭା ଗଙ୍ଗା-ଯମୁନା-ସଙ୍ଗମ ବକ୍ଷରେ ଧାରଣ କଲା । ସେହି ଭାଇଙ୍କର ବର୍ଣ୍ଣାନୁକାରିଣୀ ଗଙ୍ଗାଯମୁନା ତେଣୁ ତୀର୍ଥରୂପେ ପରିଗଣିତ ହୋଇଅଛି । କିନ୍ତୁ ଭାଇ ଦୁହିଙ୍କର ନାମ ଦୁଇଟି ମହାତୀର୍ଥ । କେତେ ପତିତପାପୀ ପ୍ରତିନିୟତ ସେ ନାମ-ତରଙ୍ଗିଣୀର ଶାନ୍ତିପୟଃ ପାନକରି ସଂସାରଜ୍ୱାଳାରୁ ମୁକ୍ତ ହୋଇ ସାକ୍ଷାତ୍ ବୈକୁଣ୍ଠ-ପରମପଦ ଲାଭ କରୁଛନ୍ତି, ତାହା କିଏ କହିପାରିବ ?



## ତୃତୀୟ ପରିଚ୍ଛେଦ ।



ଭଗବାନଙ୍କର ଆବିର୍ଭାବ କ୍ଷେତ୍ର-ବିଶେଷରେ ହୋଇଥିବାର ଶୁଣିଲାକ୍ଷଣି କଳାକରକୌମୁଦୀସମ ସୁସ୍ନିଗ୍ଧ-ସସ୍ମିତ-ପ୍ରସନ୍ନବଦନ ଭକ୍ତମାନେ ଆତ୍ମବିସ୍ମୃତ ହୋଇ ଭଗବଦ୍ଦର୍ଶନ ମାନସରେ ସେଠାକୁ ଧାବମାନ ହୁଅନ୍ତି । କୋଟିନିଧି ଲାଭ ଆଶାରେ କୃପଣ ଯେପରି ଆହ୍ଲାଦିତ ହୁଏ, ଭକ୍ତମାନେ ତହୁଁବଳି ଆହ୍ଲାଦିତ ହୁଅନ୍ତି । ଆତ୍ମବିସ୍ମୃତିବଶତଃ ସାଂସାରିକ କର୍ମବନ୍ଧନ ଶିଥିଳ ହୁଏ ଏବଂ ଈଶ୍ୱର-ପ୍ରେମନିବନ୍ଧନ ଗୃହକର୍ମ ଓ ନିତ୍ୟକର୍ମମାନ ଅନନୁଷ୍ଠିତ ବା ଓଲଟ-ପାଲଟ ହୁଏ । ଭକ୍ତକୁଳ-ଲଲାଟିକା ଗୋପିକାମାନଙ୍କର ଭକ୍ତି-ପ୍ରବଣ ଚିତ୍ତ ମୁକୁନ୍ଦ-ଜନ୍ମରୂପ ଭଗବତ୍-ପ୍ରେରଣାରେ ସେ ସୃଷ୍ଟିଛଡ଼ା ପ୍ରେମର ପ୍ରଥମ ଆସ୍ୱାଦନ ଲାଭକଲା । ଚିତ୍ତବିଭ୍ରମ ହେତୁ ଗୋପୀମାନେ ଶିରୋଭୂଷଣ କଣ୍ଠରେ ଓ କଣ୍ଠଭୂଷଣ ଶିରରେ ସ୍ଥାପନ କଲେ । କେହି କେଶମାର୍ଜନ କରୁଥିଲା, ମନର ଉଚ୍ଚାଟବଶତଃ କେଶମାର୍ଜନୀକୁ ହସ୍ତରେ ଧରି କୁମାର ଦର୍ଶନ ପାଇଁ ଦଉଡ଼ିଲା;

କେହି କ୍ରୀଡ଼ାରତ ଥିଲେ, ନନ୍ଦସୁତର ଜନ୍ମକଥା ଶୁଣି କ୍ରୀଡ଼ା ପରିତ୍ୟାଗ କରି ନନ୍ଦ ଗୃହଆଡ଼େ ଧାବମାନ ହେଲେ । ଏହିପରି ଚତୁର୍ଦ୍ଦିଗରୁ ଧାବିତ ଗୋପିକାମାନଙ୍କର ଅଙ୍ଗଯଷ୍ଟି ସମୀର-ଦୋଳାୟିତ କଳଧୌତଲତିକା ସମ ଇତସ୍ତତଃ ଚଞ୍ଚଳ ହୋଇ କାଦମ୍ବିନୀ-କୋଳରେ ଚପଳା ସଦୃଶ ସର୍ବଦିଗରେ ଝଟକିଲେ । କେହି ସିଂହକଟି ଗୁରୁନିତମ୍ବା ଗୋପାଙ୍ଗନା ହଂସକ-ଧ୍ୱନି କରି କଳହଂସ-ଗତିରେ ଗମନ କରୁଥିଲେ । ତାହାର ଦ୍ରୁତଗମନ ଯୋଗୁଁ ଗଳାର ଶୁଭ୍ରତାରକୋଜ୍ଜ୍ୱଳ ଲଳନ୍ତିକା ମୁକ୍ତାହାର ଚଞ୍ଚଳ ଦୋଦୁଲ୍ୟମାନ ହେଉଥିଲା. ଏବଂ ଫୁଲ୍ଲ କୁସୁମ କବରୀରୁ ଖସି ରାହୁ-କବଳରୁ ସୁଧାଖଣ୍ଡ ଖସିଲା ପ୍ରାୟ ପ୍ରତୀୟମାନ ହେଉଥିଲା । କଟିର କାଞ୍ଚୀମାଳା ମଧୁର ନିଃସ୍ୱନ କରି କୌଣସି ଅନ୍ୟମନସ୍କା ଖରଗତି ବ୍ରଜବାଳାକୁ ବେଳେ ବେଳେ ସତର୍କଛଳରେ କହୁଥିଲା, "ସାବଧାନ ହୋଇ ଧୀରେ ଗମନ କର; କାଳେ କଚୁଡ଼ି ପଡ଼ିବ ଓ ତୁମ୍ଭର ଅଙ୍ଗଯଷ୍ଟି ଭାଙ୍ଗି-ପଡ଼ିବ। ପ୍ରଥମେ ଶରୀରରକ୍ଷା କରି ପରେ ଧର୍ମସାଧନ କର ।" ସଂକ୍ଷେପତଃ ଗୋପନାରୀ-ହୃଦୟ ଆହ୍ଲାଦରେ ସ୍ପନ୍ଦିତ ହୋଇ ପ୍ରେମରେ ଆପ୍ଲୁତ ହେଲା । ତଦ୍‌ଗତପ୍ରାଣ ଭକ୍ତ ସଂସାରବନ୍ଧନ ଦୂରକୁ ଫିଙ୍ଗି ମାୟାମୁକ୍ତ ହୋଇ ଭଗବାନଙ୍କ ଚରଣଦର୍ଶନଲୋଭରେ ପ୍ରଖର ବେଗରେ ଅଗ୍ରସର ହେଲେ ଏବଂ ନନ୍ଦଗୃହରେ ଉପସ୍ଥିତ ହୋଇ ସୌଭାଗ୍ୟଶାଳୀ କାନ୍ତା-କଦମ୍ବ ଏକମେଳରେ ନନ୍ଦବାଳଙ୍କର ଦର୍ଶନପ୍ରାପ୍ତ ହେଲେ । କୁମାରଙ୍କ ଶ୍ରୀଅଙ୍ଗଶୋଭା ସେମାନଙ୍କ ଚକ୍ଷୁସମୀପରେ କଳାମେଘ ପାଶରେ ଚନ୍ଦ୍ର ପ୍ରାୟ ବିକଶିତ ହେବାକୁ ଲାଗିଲା । ସେତେବେଳେ ଅନୁରାଗିଣୀ ଭକ୍ତା ଗୋପିକାମାନଙ୍କର ହୃଦୟାନନ୍ଦ କିଏ କଳନା କରିବ ? କେଉଁ ଗୋପୀ ଅନାଇଁ ସୁଚକିତ ହେଲେ; କିଏବା ଚିତ୍ରପଟବତ ଦଣ୍ଡାୟମାନ ରହିଲେ, ତାହାର ଅଙ୍ଗ ଅପାର ଆନନ୍ଦରେ ପୁଲକିତ ହେବାରୁ ନୟନ ଆନନ୍ଦାଶ୍ରୁ-ବର୍ଷଣ କଲା, ପ୍ରତ୍ୟକ୍ଷ ଅନନ୍ତଙ୍କୁ କୋଳରେ ପାଇଛନ୍ତି ଭାବି କେହି ଗୋପୀ ଯଶୋଦାଙ୍କୁ ସୌଭାଗ୍ୟବତୀ ମଣୁଥିଲେ; କେହିବା ନନ୍ଦଙ୍କର ତପ ଓ ଦାନର ମହିମା ବର୍ଣ୍ଣନ କରୁଥିଲେ; କେହି ତାଙ୍କୁ କଳ୍ପତରୁଅଙ୍କୁର ବୋଲି କହୁଥିଲେ, କେହି ପୁଣି ତାଙ୍କୁ ସୌନ୍ଦର୍ଯ୍ୟର ଅବତାର ବୋଲି ମନେ

କରୁଥିଲେ । ଜଣେ ଅନ୍ୟ ଜଣକୁ କହିଲେ, "ଦେଖ,ଦେଖ, କୁମାରପାଦ-ତଳରେ କମ୍ବୁ, ଚକ୍ର, ମୀନ, ପଦ୍ମ, କୁଳିଶ, କାର୍ମ୍ମୁକ କଳଶାଦି ଅଷ୍ଟଦଶ ଲକ୍ଷଣ କିପରି ବିରାଜମାନ, ଏ ମୁକୁନ୍ଦବିଗ୍ରହକୁ ଦର୍ଶନ କରି କେଉଁ ସଂସାରାସକ୍ତ ଜନ ଏହାଙ୍କ ଆଡ଼େ ଆକୃଷ୍ଟ ନହେବ ? କେଉଁ ସଂସାର ନିଜ କୁଳମର୍ଯ୍ୟାଦାରେ ଜଳାଞ୍ଜଳି ଦେଇ ଇଷ୍ଟଦେବତାର ଉପାସନା ଛାଡ଼ି ଏହାଙ୍କ ସେବାରେ ନିଯୁକ୍ତ ନହେବ ?" ଏକ ସଖୀ ଅପର ସଖୀକୁ କହିଲା, "ଏଥର କବିମାନଙ୍କର ଜୀବିକା ବୁଡ଼ିଲା, କାରଣ ବିଧାତା ସେମାନଙ୍କ ପ୍ରତି ବାମ ହେଲେ । ଦେଖ, ଯେଉଁମାନେ ଉପମାସ୍ଥଳ ହୋଇ କବି-ସମ୍ମାନ ଥିଲେ, ଏବେ ସେମାନଙ୍କର ଆଉ ସେ ଅଧିକାର ନାହିଁ । ତଥାପି ପଦ୍ମ ଜଳରେ ତପସ୍ୟା କରୁଥିବାରୁ, ଶଶୀ ମହେଶଙ୍କୁ, ଓ ସିନ୍ଧୁ ଶିବାଙ୍କୁ ସେବା କରୁଥିବାରୁ ଏତନହେଁ କିମ୍ବଦଂଶ ଉପମାସ୍ଥଳ ହେଲେ ହେବେ, କିନ୍ତୁ କଜ୍ଜଳ, ତମାଳ, ଯମୁନା, ନୀଳକମଳ, କଳାମେଘ, ଇନ୍ଦ୍ରନୀଳମଣି, ଅତସୀ ଓ ଅମାଅନ୍ଧକାର କଳାମଧ୍ୟରେ ଗୁରୁ ହେଲେହେଁ ଏମାନେ କୁମାରଙ୍କ ରୂପର ସମକକ୍ଷ ନୁହନ୍ତି । ପୁଣି ଦେଖ, କୁନ୍ଦ କର୍ପୂର, କୁମୁଦ, ଗୋକ୍ଷୀର, କାଶ, ସାଗରଫେନ, ଶଙ୍ଖ, କୈଳାସଗିରି, ଗଙ୍ଗାନୀର, ରଜତ, ସ୍ଫଟିକ, ତୁଷାର, ଓ ଶଶଧର, ଏମାନଙ୍କ ସହିତ ସୁନ୍ଦରରୂପ ତୁଳନା କରିବାକୁ ଯାଉଁ ଯାଉଁ ଏମାନେ ନ୍ୟୂନ ଦିଶିଲେ । କିନ୍ତୁ ଏମାନଙ୍କୁ ଏହାଙ୍କ କାନ୍ତିର ଲକ୍ଷ୍ୟସ୍ଥଳ କଲେ, ସେ ଅବଶ୍ୟ ଅତିବେକ ବୋଲି ଜଣାପଡ଼ିବ । ଉପର୍ଯ୍ୟୁକ୍ତ ବସ୍ତୁମାନ ଓ କୁମାର କାନ୍ତି ଦେଖିବାକୁ କାଚକାଞ୍ଚନସମ ଓ ମୂଲ୍ୟରେ କାଚ-କାଞ୍ଚନ ସଦୃଶ । କିନ୍ତୁ ବଚନରେ ନାନା ମିଛଫନ୍ଦା କରି କେତେବେଳେ ଧନପତିକୁ ରତିପତି ବୋଲି ବର୍ଣ୍ଣନ କରେ; କେତେବେଳେ ପୁଣି ରତିପତିର ନିନ୍ଦା କରି ଧନପତିର ସୌନ୍ଦର୍ଯ୍ୟ ବଢାଇ ଦିଏ ।",

ଏହିପରି କଥୋପକଥନ କରୁଁ କରୁଁ କୁମାର କଳକଣ୍ଠରେ ବେଦନ କଲେ । କର ଚରଣ ଗୃଳବାର ଭାବ ଦେଖି ମନେ ହେଉଥିଲା, ଯେପରି ଭଗବାନ ଭକ୍ତମାନଙ୍କୁ ତାହାଙ୍କର ଆନ୍ତର ନିକଟବର୍ତ୍ତୀ ହେବା-

ଯାଇଁ ଇଙ୍ଗିତ କରୁଥିଲେ । ତତ୍‌ପରେ ବ୍ରଜାଙ୍ଗନାମାନେ କୁମାରଙ୍କ ରୂପଲାବଣ୍ୟ ମନେ ମନେ ଧ୍ୟାନ କରି ଅନିଚ୍ଛାସତ୍ତ୍ୱେ ନିଜ ନିଜ ଗୃହକୁ ଫେରିଲେ । କାଳସର୍ପର ଗାରୁଡ଼ମନ୍ତ୍ର, ଦୁର୍ଗମ ପଥରେ ଚାଳକ, ଦୁଃଖ-ସାଗରରେ ତରଣୀ, ଓ ଭକ୍ତର କାମକଳ୍ପଦ୍ରୁମ ସେ କୃଷ୍ଣକଥା-ପ୍ରସଙ୍ଗ ସେମାନଙ୍କ କଥୋପକଥନର ଏକମାତ୍ର ବିଷୟ ହେଲା ।



## ଚତୁର୍ଥ ପରିଚ୍ଛେଦ ।



ଅନନ୍ତର କୁମର ଜନ୍ମିବାର କେତେଦିନପରେ କ୍ରୂରକର୍ମୀ ପୂତନା ସ୍ତନରେ କାଳକୂଟ ବିଷ ଦେଇ ଗୋପରେ ଉପସ୍ଥିତ ହେଲା । କଳା କୁଟିଳ କୁନ୍ତଳରେ ଖୋସା ଖୋସି ତହିଁରେ କମନୀୟ ଫୁଲମାଳ ମିଶାଇ କପାଳରେ ସିନ୍ଦୂର-ମଣ୍ଡଳଚିତା ଯେନ ସେ ଅପୂର୍ବ ମନୋହର ରୂପ ଧାରଣ କରିଥିଲା । ରତ୍ନାଭରଣଭୂଷିତ କଣ୍ଠ, ତାମ୍ବୁଳ ବୋଳ-ସୁରଙ୍ଗ ଓଷ୍ଠ, ନାସାଭରଣଶୋଭିତ ନାସାପୁଟ, କଜ୍ଜଳପରିପୂରିତ ନେତ୍ରତଟ, ଓ ଆକର୍ଣ୍ଣବିସ୍ତୃତ କଜ୍ଜଳଲଞ୍ଛି ତାହାର ଲାବଣ୍ୟକୁ ଉଜ୍ଜ୍ୱଳ କରୁଥିଲା । ତହିଁରେ ପୁଣି ହସ୍ତରେ ତାଡ, ଚୂଡ଼ି, ଓ କଳାଆସ୍ତି ପିନ୍ଧି, ଚରଣରେ କଙ୍କଣୀ, ପାହୁଡ଼ ଲଗାଇ, କରତଣ୍ଠରେ ତଉଁରିଆମାଳି ବାନ୍ଧି, ଏବଂ କଳାମେଘୀ ଶାଢ଼ୀ ଖଣ୍ଡିଏ ପରିଧାନକରି ବେଳେ ବେଳେ କୋଣିଆଁଇଁ ଗୃହ କରିବର-ଗତିରେ ବୁଲୁଥିଲା; ତେଣେ ପାପୀୟସୀ କାଖରେ ବିଷଲଡ଼ୁ-ଥାଳି ଘେନିଥିଲା । ତାକୁ ଦେଖି ଏ କାହାର ସ୍ତ୍ରୀ ବୋଲି କେହି ଗୋପୀ ଅନ୍ୟକୁ ପଚାରିଲା । କେହି କହିଲା, 'ଏ ଜଣେ ଅପ୍‌ସରା ହେବ, ନୋହିଲେ ଏଡ଼େ ଗୋରା ହୁଅନ୍ତା କି ?' ଅନ୍ୟ ଜଣେ ବୋଇଲା "ରୂପରାଶିକୁ ବିଧି କେତେ କାଳ ବସି କେଉଁଠାରେ ଗଢ଼ିଲା ।" କେହି ଅବା ଏହାକୁ ରତିଙ୍କର କୈତବମୂର୍ତ୍ତି ବୋଲି ନିଜର ଅଭିମତ ପ୍ରକାଶ କଲା ।

ଏହିପରି କହୁଁ କହୁଁ ପୂତନା ନନ୍ଦପୁରରେ ମିଳି କୁମରଙ୍କୁ ଦେଖି ହସହସ ହେଲା । ଥାଳୀ ତଳେ ଥୋଇ ସେ ଯଶୋଦାଦି ନନ୍ଦ-ପୁରନାରୀଙ୍କ ମେଳରେ କଥାଭାଷା କଲା ଏବଂ କହିଲା, "ପୁତ୍ର-ଜନନ କର୍ଣ୍ଣରେ ଶୁଣିଲା ବେଳୁଁ ଦେଖିବାକୁ ଆସିବାପାଇଁ ନିତ ମନ କରୁଥାଏଁ, ଏତେଦିନେ ଯାଇ ଆସିବାକୁ ମୋତେ ଯୋଗ ଘଟିଲା । କୁମରଙ୍କୁ ଦେଖି ମୋର ବୁକୁ ଫୁଲୁଛି, ନନ୍ଦରାଣୀ, ଆପଣ ଅବଧାନ କଲେ, ମୁଁ ଏହାଙ୍କୁ କ୍ଷୀରପାନ କରାଇବି ।" ଏ କୌତୁକ କଥା ଶୁଣି ନନ୍ଦରାଣୀ ଆନନ୍ଦିତା ହୋଇ ନବଘନରୂପକୁ ତାହା କୋଳରେ ବସାଇ ଦେଲେ ।

ଅନ୍ୟପ୍ରତି ଯେ ଯେଉଁ କର୍ମ୍ମ କରେ, ଧର୍ମ କାଳକ୍ରମେ ଅବଶ୍ୟ ତାହାକୁ ସେହି କର୍ମହିଁ ଭୋଗ କରାଏ; ପରପାଇଁ ଯେ ଯେଉଁ ଗାତ ଖୋଳେ, ସେହି ଗାତରେ ସେ ନିଜେ ପଡେ; ଶ୍ରୀହରି ପୂର୍ବେ ଶିବଙ୍କୁ ବିଷପାନ କରାଇଥିଲେ, ସୁତରାଂ ସେ କର୍ମ ଭୋଗ କେଉଁତେବେଳେ ଅନ୍ୟଥା ହେଲାନାହିଁ । ତାହାଙ୍କୁ କୌଣସି କଥା ଅପ୍ରତ୍ୟକ୍ଷ ନୁହେଁ; ତଥାପି ଜାଣୁ ଜାଣୁ ସେ ବିଷସ୍ତନ ଶୋଷିବାପାଇଁ ମନ କଲେ । କର୍ମବନ୍ଧନ କି ଦୁଶ୍ଛେଦ୍ୟ ! ସର୍ବଙ୍କ ଭଗବାନ୍ ମଧ୍ୟ ଲୀଳା ଆରମ୍ଭରୁ ଶେଷପର୍ଯ୍ୟନ୍ତ ତାହା ଏଡ଼ାଇବାକୁ ଅକ୍ଷମ, ସୁତରାଂ କଳାବଦନରେ ସ୍ତନ-ବୋଣ୍ଟ ଦେଲକ୍ଷଣି ସେ ଚୋଷିବାପାଇଁ ଅଡା ପକାଇଲେ ଏବଂ ଏକା-ବେଳକେ ପୂତନାପ୍ରାଣ ପିଇଲେ; ତାହାର ନିଜ ବିଲକ୍ଷଣ ରୂପ ପ୍ରକାଶ ପାଇଲା । ପୂତନା ନାମ କୁମାର ନାମ ସମ୍ପର୍କରେ ଆସିବାରୁ ପୂତନା ଅନନ୍ତ କାଳ-ବ୍ୟାଧିରୁ ନିଷ୍କୃତି ପାଇ ଅମରତ୍ୱ ଲଭିକଲା । କୃପାନିଧି ଯାହାଠାରେ କୃପା କରନ୍ତି, କୁମ୍ଭକାର କାଠ ପ୍ରାପ୍ତ ତାହାକୁ ମାରି ତାରନ୍ତି । ବଡ଼ ଲୋକ କଣ୍ଠାଗତପ୍ରାଣ ହେଲେ ସୁଦ୍ଧା ସେ ନିଜର ଟେକ ଛାଡ଼ନ୍ତିନାହିଁ; ବୃକ୍ଷ କାଟିବାକୁ ଗଲା ଲୋକକୁ ବୃକ୍ଷ କି ଛାୟା ଦିଏନାହିଁ ? ଗତପ୍ରାଣା ଉତ୍ତାନଶାୟିନୀ ପୂତନାର ବକ୍ଷ ଉପରେ କୁମାର ଗିରିଶୃଙ୍ଗଲଗ୍ନ କଳାମେଘଖଣ୍ଡସମ ପ୍ରତୀତ ହେଲେ । ଯଶୋବନ୍ତୀ ସନ୍ତ୍ରସ୍ତା ହୋଇ ପୁତ୍ରକୁ ସତ୍ୱର ଘେନିଗଲେ ଓ ତାହା-ଙ୍କର ମଙ୍ଗଳକାମନାରେ ଦାନାରାଧନାଦି ନାନା ପୁଣ୍ୟକାର୍ଯ୍ୟ କରି ରକ୍ଷା

ଶାନ୍ତ କଲେ । ବ୍ରଜବାସିମାନେ ଚକିତ ଓ କୁପିତ ହୋଇ ପୂତନା ଶବ ଜାଳି ଭସ୍ମସାତ୍ କରିଦେଲେ । କିଛିଦିନ ଅନ୍ତେ କୁମାର ଶକଟାକୁ ନାଶକରି ଓ ତୃଣାବର୍ତ୍ତର କଣ୍ଠ ଚିରି ସେମାନଙ୍କର ପ୍ରାଣ ନେଲେ ।

ତଦନନ୍ତର ନାମକରଣ-ଦିବସ ଉପସ୍ଥିତ ହେଲା । ସେଦିନ କେତେ ଦ୍ୱିଜ, ଋଷି, ଓ ମହର୍ଷି ନନ୍ଦଗୃହରେ ସମବେତ ହେଲେ । ଉତ୍ସବ-କୋଳାହଳ ସାଗରକଲ୍ଲୋଳକୁ ବଳିପଡ଼ିଲା । ନୃତ୍ୟକାର, ଚିତ୍ରକର, ଗାୟକ, ବାଦକାଦି ନିଜ ନିଜ ବିଦ୍ୟା ପ୍ରକଟକଲେ । ଶ୍ରୋତୃବର୍ଗ ଦର୍ଶକମଣ୍ଡଳୀ, ଉଚ୍ଚନୀଚ ଓ ଧନୀନିର୍ଦ୍ଧନ, ଆବାଳବୃଦ୍ଧବନିତା ସମସ୍ତେ ମନଉଲ୍ଲାସରେ ସୁଖ-ସେବ୍ୟ ଦିବସ ଅତିବାହିତ କଲେ । ଶୁଭ ମୁହୂର୍ତ୍ତରେ ବ୍ରାହ୍ମଣ ମନ୍ତ୍ରପାଠ କଲେ, ମହର୍ଷି ବେଦୋଚ୍ଚାରଣ କଲେ ଏବଂ ଗର୍ଗଋଷି ବେନସ୍ୱଇଙ୍କୁ ରାମକୃଷ୍ଣ ନାମ ଦେଇ ନିଜେ କୃତାର୍ଥ ହେଲେ ଏବଂ ଜଗଜ୍ଜନଙ୍କୁ କୃତାର୍ଥ କଲେ । କୃଷ୍ଣଶବ୍ଦ ଜିହ୍ୱା ଉଚ୍ଚାରଣ କଲା, କର୍ଣ୍ଣ ଶ୍ରବଣକଲା, ଓ ମନ ନିରତ ଭଜନ କଲା । ବନ୍ଦିଗଣ କୃଷ୍ଣନାମମାହାତ୍ମ୍ୟ ବର୍ଣ୍ଣନ କଲେ । ନନ୍ଦ ଧନ, ଭୋଜନ ଓ ଆଭରଣ ମୁକ୍ତହସ୍ତରେ ଦାନକରି ଦରିଦ୍ରମାନଙ୍କର ପ୍ରାର୍ଥନା ପୂରଣ କଲେ ।

ଏ ମହୋତ୍ସବରେ ଯୋଗ ଦେବାପାଇଁ ପ୍ରଲୁବ୍ଧା ହୋଇ କାତ୍ୟାୟନୀ ମାନବୀ ଦେହରେ ବ୍ରଜରେ ଦେଖାଦେଲେ । ନିତମ୍ବଚୁମ୍ବି କେଶଦାମ ବେଣୀ-ଅଙ୍ଗ-ସଙ୍ଗରେ ଗଙ୍ଗାଯମୁନାମିଳନ ଶୋଭା ଧାରଣ କରିଥିଲା । ତାଙ୍କର ଦନ୍ତପନ୍ତି କଙ୍କତକାନ୍ତିଭ ଓ ରୂପକାନ୍ତି ଅମାନିଶିସମ ଶୋଭା ପାଉଥିଲା । କାତ୍ୟାୟନୀ ଅଙ୍ଗଭଙ୍ଗୀକରି ଅପାଙ୍ଗ ଦୃଷ୍ଟିରେ ଚୁହିଁ ସାତୋଟି ଫୁଲଡାଳି ହସ୍ତରେ ଘେନି ଗମନ କରୁଁ କରୁଁ ଡାକି ଡାକି ବୋଲୁଥାନ୍ତି, "ରେ କୁମରମାନେ, ଆସ, କଲେ କଲେ ଦୁଧ ଖାଇଯାଅ" ଏ ଡାକ ଶୁଣି କେହି ବୋଇଲା, 'ଆରେ, ଏ ତ ପୂତନା ଭଉଣୀ, ଏହାର କହୁଣୀରେ ବଡ଼ ଶରଧା; ଲଗାଅ, ଲଗାଅ, ।' କିନ୍ତୁ କାହିଁରେ ଭ୍ରୂକ୍ଷେପ ନ କରି ଦେବୀ କୃଷ୍ଣ ଉତ୍ସବରେ ମାତି ଅନେକ ନାଟନୃତ୍ୟ

କଲେ । ନନ୍ଦ ମହାଖୁସିରେ ତାହାଙ୍କ ଶିରରେ ପାଟଶାଢ଼ୀ ବାନ୍ଧଦେଲେ । କାତ୍ୟାୟନୀଙ୍କ ଉଦ୍ୟମରେ କୃଷ୍ଣନାମ ସର୍ବନଗରେ ବାଜିଗଲା । କଳାପୂର୍ଣ୍ଣ ହେଲେ କଳାକର ଯେପରି ଅନ୍ଧକାର ନାଶକରି ଶୀତଶୁଭ୍ର କୌମୁଦୀ ଅନବଚ୍ଛିନ୍ନ ଧାରା-ପ୍ରବାହରେ ଧରାବକ୍ଷରେ ଢ଼ାଳେ, ସେହିପରି ବାଳମୁକୁନ୍ଦ 'କୃଷ୍ଣ' ନାମ ଦ୍ୱାରା ସଂଶୟ ଛେଦନ କରି ସର୍ବଜନହୃଦୟରେ ବିମଳ ଆନନ୍ଦମୟ ଅଜସ୍ର ଶାନ୍ତିସୁଧା ସେହି ଅଦଳିତ କାଳରୁ ଅବିରାମ ସେଚନ କରି ଆସୁଅଛନ୍ତି ।



## ପଞ୍ଚମ ପରିଚ୍ଛେଦ ।



କଳାକର-କଳା ବଢ଼ିଲାପ୍ରାୟ ଯଶୋଦା-ତନୟ କ୍ରମେ ବଢ଼ିବାକୁ-ଲାଗିଲେ । କରଜାନୁରେ ଗମନ କଲାବେଳେ କଟି-ତଟରେ କିଙ୍କିଣୀ କଣିକଣି ଧ୍ୱନି କରି ଚିତ୍ତାକର୍ଷକ ହେଲା । କମଳରେ ଭ୍ରମରମାଳାପରି କୁଟିଳନୀଳ-କୁନ୍ତଳ ମୁଖମଣ୍ଡଳରେ ଲୋଳାୟମାନ ହେଲା । କଣ୍ଠଭୂଷଣ ଓ କରକଙ୍କଣ ଦର୍ଶକ-ମନମୋହନ ହେଲା । କଜ୍ଜଳପୂରିତ ଲୋଚନ, କୋକଳନନ୍ଦ-ବଳ-ବଚନ, ଶ୍ରୀଅଙ୍ଗଲେପିତ କୁଙ୍କୁମ ସୁଷମାର ପୂର୍ଣ୍ଣତା ସମ୍ପାଦନ କରି ଜଡ଼-କଳ୍ପନାକୁ ଉପହାସ କଲା । କେତେବେଳେ ଶ୍ରୀକୃଷ୍ଣ ନନ୍ଦପ୍ରାଙ୍ଗଣରେ ଭୂଲି କରି-କଲଭ ପ୍ରାୟ ଝୁଲନ୍ତି, କେତେବେଳେ ବା ଧୂଳିରେ ବୋଳି ହେବାରୁ ମାତା ଆଦରରେ ଝାଡ଼ିଦେଇ ମିଛରେ ଚଳି ହୁଅନ୍ତି । କର୍କଶ ବାଣୀ ଶୁଣି କାନ୍ଦିଲେ ମାତା ସ୍ନେହରେ ଶାନ୍ତ କରନ୍ତି । କେତେବେଳେ ବା ପଙ୍କରେ ଯାଇଁ ପଡ଼ନ୍ତି, ଏବଂ ଯଶୋଦା କ୍ରୋଧରେ କର ମାରି ଧାଇଁବାର ଦେଖି ଗୋପୀମାନେ କରକରି ହସି କୁମାରଙ୍କୁ ମାତାଙ୍କ କରରେ ତୋଳି ଦିଅନ୍ତି । ତହୁଁ ଅଙ୍କେ କରି ମୁକୁନ୍ଦ କ୍ଷୀରପାନ କରନ୍ତି । ତତ୍ପରେ କୁମାରଙ୍କୁ ନେଇ ଗୋପୀଏ ନାନାପ୍ରକାର ଖେଳ

କରନ୍ତି । କେହି କହେ, 'ଆରେ ମୋ ବାପଧନ, ହିଙ୍କଚନ୍ଦନ, କଳାକହ୍ନା, ତୋ'ଠି ମୁଁ ମରଯାଏଁ, କାହିଁକି କାନ୍ଦୁଛୁ, କିଏ ତୋତେ ଏତେ ଅଭିମାନ ଶିଖାଇଲା ?' ଆଉ ଜଣେ କାଖରେ ନେଇ କହେ, 'ଘନଶ୍ୟାମଳୀସ୍ନା, ଚୂର୍ଣ୍ଣକୁନ୍ତଳୀସ୍ନା, ମୋ ମର୍କତମାଳ, କୋଟିଦୁଃଖହରା, ସୁଖପଞ୍ଜାଳ, ତୁ ବଡ କପଟୀ, ତୁ ପର ଧାଇ-ପରଶେଷିଆ ।' ଅନ୍ୟ ଗୋପୀ କୋଳରେ ଧରି ବୋଲେ, 'ଏ ମୋର କୁସୁମଗନ୍ଧ, ଚକ୍ଷୁର ଜ୍ୟୋତି, କପାଳ ସ୍ଥଳର କସ୍ତୁରୀ-ତିଳ, ଏ ଯଶୋଦାଙ୍କ କୂଳଉଦ୍ଧାରଣ, ନନ୍ଦ କି ତପକରି ଏ ରୂପ ପାଇଲେ ।' ଆଉ ଜଣେ ତାହା କାଖରୁ ଛଡ଼ାଇ ନେଇ ମୁଖରେ ଚୁମ୍ବନ ଦିଏ, ଏବଂ ଚରଣ ସ୍ପର୍ଶରେ ଶୀତଳତା ଅନୁଭବ କରି ଚନ୍ଦ୍ର ଚନ୍ଦନକୁ ନିନ୍ଦାକରି କହେ, କୁମାର 'ଲୋକେ ଏ ଗୁଡ଼ାକୁ କି ଗୁଣରେ ଅର୍ଚ୍ଚନା କରନ୍ତି, ମୋ କାଳଆପରି କିଏ ସେ ହେବ. ତୋଠିଁ ମୁଁ ଲୁଚଯାଏଁ ।'

ଏହିପରି ଶ୍ରୀକୃଷ୍ଣ କେତେ ଯେ ବାଳଲୀଳାରଙ୍ଗ କରନ୍ତି, ତାହା ସମୁଦ୍ର-ତରଙ୍ଗପରି ଅକଳନ । ଦିନେ ଅତି ଗୋଳ କରିବାରୁ ଯଶୋଦା ମାତା ଯାମଳାର୍ଜ୍ଜୁନ ବୃକ୍ଷରେ ଶ୍ରୀକୃଷ୍ଣଙ୍କୁ ଖଞ୍ଜାଇଲେ; କିନ୍ତୁ ଲୀଳାମାନବେ ଯାମଳାର୍ଜ୍ଜୁନକୁ ଭଞ୍ଜନ କରି ମୁକୁନ୍ଦ ବୃକ୍ଷରୂପୀ ଶାପଗ୍ରସ୍ତ କୁବେର-ପୁତ୍ରଦ୍ୱୟଙ୍କୁ ଶାପମୁକ୍ତ କଲେ । କିଛୁକାଳପରେ ଚୂଳଶିଖି କୁମାର ଗୋପରେ ବିଚରଣ କଲେ । ଦିନେ ଶ୍ରୀରଙ୍ଗ ସଖାମାନଙ୍କ ସଙ୍ଗକରି କାହା ଘରେ ପଶି ଲବଣୀ ଖାଇଲେ, କାହା ଘରେ ଯାଇ ଦୁଧଦହି ପିଇଲେ । କେହି ଗୋପୀ ଯାଇ ଯଶୋଦାଙ୍କ ପାଖରେ ଏକଥା ଗୁହାରି କଲା, କେହି ବା ଏହା ସ୍ନେହଭାବରେ ସହିଲା । ଜଣେ ଗୋପୀ କୋପ ଓ ଶୋକକରି କହିଲା, "ଏ ସ୍ଥାନରେ ଆମ୍ଭେମାନେ କିପରି ରହିବୁଁ; କୃଷ୍ଣପ୍ରତାପ ତ ସହିହେଲାନାହିଁ; ଏ କଥା କାହାକୁ କହିବୁଁ, କିଏ ବା ଶୁଣିବ, ତାହାର ତ କଂସକୁ ଭୟ ନାହିଁ, ଅନ୍ୟ କିଏ ଏଠାରେ ଥୟ ହେବ, କପରି ଯେ ମନ୍ଦିରରେ ପଶେ, କପରି ଯେ ଲବଣୀ ଖାଇଦିଏ, ତାହା ବଡ ଆଶ୍ଚର୍ଯ୍ୟର କଥା । କଅଁଳା ପୁଅର ଜାବକା ହେଲା ଚୋର, ଏହା ଗୋପରେ ଡକା ପଡ଼ୁଛି, ଏପରି ପୁଅତ ଆଉ କାହିଁ ଦେଖାନାହିଁ, ନାନାପ୍ରକାର ଅଙ୍ଗଭଙ୍ଗି କରି ନାନାପ୍ରକାର ଛୁଅ ଆରମ୍ଭ କରି ସେ ବିନା କାରଣରେ ଲୋକଙ୍କୁ ହସାଏ, କନ୍ଦାଏ । କାଲି

ଆମ୍ଭମାନଙ୍କ ଆଗରେ ଜାତ ହୋଇ ଏତେ ଚତୁରପଣ କାହୁଁ ଶିଖିଲ ?"

ଆଉ ଜଣେ କହିଲା, "ମୁଁ ଦିନେ କୃଷ୍ଣଙ୍କୁ ଗୋପରେ ଗୋଳ ନ କରି ମୋ ଘରେ ଯେତେ ଇଚ୍ଛା ସେତେ ଦୁଧସର ଖାଇବାକୁ ଡାକିଲି; ସେ ପାଣିମିଶା ଦୁଧ ନେବନାହିଁ ବୋଲି କହି ଏଣୁତେଣୁ ବାରଣ କଥା ବୋଇଲ; ମୋତେ ତ କଥାରେ ବାଉଳା କରିଦେଲା; ସେ ପୁଅ କଥା କହନା, ତା କଥା କହିଲେ ମନରୁ ଦୁଃଖ ପାଶୋରିଯାଏ।"

ଆର ସଖୀଟି ବୋଇଲା, "ଦିନେ ମୋ ଘରେ ଯାଇ ଗୋଳ କଲେ; ମୁଁ ଯେପରି କହିଲି, ତୁମ୍ଭେ କଣ ଗୋପରେ ଭୂପ ହେଲ ? ଏହା ଶୁଣି ଶ୍ରୀକୃଷ୍ଣ ମୋ ଆଗରେ ଯେଉଁ ଅଙ୍ଗଭଙ୍ଗି କଲେ, ତାହା ଦେଖି ମନରେ ମୋର ଏତେ ଆନନ୍ଦ ହେଲା ଯେ, ଶରୀର ପୁଲକପ୍ରାପ୍ତ ହେଲା ଏବଂ କରଚରଣ ନିଶ୍ଚଳ ହେଲା, ଭାଗ୍ୟେ ମୁଁ ମୂର୍ଚ୍ଛା ଯାଇନାହିଁ। ମୁଁ ତ ଚିତ୍ରପ୍ରତିମା ପ୍ରାୟ ରହିଲି; ସେହି ଦିନରୁ ମୋର ମନେ ହୋଇଛି ଯେ ବିଷୟଭୋଗୀ ସମସ୍ତେ ବିଷୟ-ବାସନା ତ୍ୟାଗକରି କୃଷ୍ଣପାଇଁ ଯୋଗୀ ହୋଇ ବନେ ବନେ ଭ୍ରମଣ କରିବେ; ଯୋଗୀର ସକଳ ଆଣି ଅହଙ୍କାର ଚୂର୍ଣ୍ଣ ହେବ, ଏବଂ ବିଭିନ୍ନ ଦେବ-ଦେବୀଙ୍କ ଆରାଧନାର ଲୋପ ହେବ, ତୁମ୍ଭେମାନେ ଆଜ ଦୁଧ-ଦହି ପ୍ରଭୃତି ସାମାନ୍ୟ ବସ୍ତୁ ପାଇଁ ବ୍ୟାକୁଳ ହେଉଛ, କାଲି ତାହାଙ୍କଠାରେ ମନପ୍ରାଣ ପର୍ଯ୍ୟନ୍ତ ସମର୍ପଣ କରି ମୁକ୍ତିରକ୍ଷା କରିବ କିପରି ?" ଏ କଥା ଶୁଣି ସକଳ ଗୋପୀ କହିଲେ, "କୃଷ୍ଣଯୋଗରେ ପଡ଼ିଛି ଆମ୍ଭମାନଙ୍କର ସମସ୍ତ ଯାଉ, ଆଜଠାରୁ ଆମ୍ଭେମାନେ ଆଉ କିଛି ବୋଲିବୁନାହିଁ। ଯେ ଅନେକ ସୁକୃତ କରିଥାଏ, ତାହାର ମତି କେଶବ-କାର୍ଯ୍ୟରେ ଲାଗେ। ନନ୍ଦନନ୍ଦନ ହିଁ ବାଟ, ସେହି ଆଜଠାରୁ ଆମ୍ଭମାନଙ୍କର ଉପାସ୍ୟ।"

ଏହି କୃଷ୍ଣପ୍ରସଙ୍ଗ କଥୋପକଥନ କରୁଁ କରୁଁ ଶ୍ରୀରଙ୍ଗ ହସ୍ତରେ ନବନୀତ-ହମ୍ବଳ ଧରି ରହିରୁ କଲେ କଲେ ଗ୍ରାସ କରି କରି ସେଠାରେ ପହଞ୍ଚି-ଗଲେ। ତାଙ୍କର ଶ୍ରୀମୁଖ ଶୈବାଳଜଡ଼ିତ କମଳ ସଦୃଶ ମଳ ଅଳକାରେ

ଶୋଭିତ ହୋଇଅଛି । କଳାକଳେବର ଧୂଳିଧୂସରିତ । କିଙ୍କିଣୀଯୁକ୍ତ କଟିରେ ଅମ୍ବର ନାହିଁ ମୁଖମଣ୍ଡଳରେ ଝାଳ ଶିଶିରବିନ୍ଦୁ ପ୍ରାୟ ବିନ୍ଦୁ ବିନ୍ଦୁ ହୋଇ ଲାଗିରହିଛି, ପ୍ରଫୁଲ୍ଲ କମଳରେ ଭୃଙ୍ଗ ଖେଳିଲାପରି କଳାଡୋଳା ଅପାଙ୍ଗଯାଏ ଚଳପ୍ରଚଳ କରୁଛି, କୃଷ୍ଣଙ୍କୁ ଡାକି ଗୋପିକା-ମାନେ ମୁଦିତମନରେ ଆଦର କରି କହିଲେ, "ରଙ୍ଗିଆ, ନାଟକର; ଲବଣୀ ଦେବୁଁ ।" ତହୁଁ ଗୋପୀମାନେ କରରେ ତାଳି ଧଇଲେ; ନବ-ଘନରୂପ ତଳି ତଳି ନାଚିଲେ, କିଙ୍କିଣୀ କିଣିକିଣି ଓ ନୂପୁର ରୁଣୁଝୁଣୁ କରି ଉଠିଲା । ସେ ନାଟଛବି ଗୋପୀଙ୍କୁ ମୁଗ୍ଧ କଲା ଓ ଭକ୍ତଙ୍କର ସମ୍ବଳ ହେଲା । ନାଚଶେଷେ ସର ଲବଣୀ ଆଦି ଯାହାର ଯାହା ଥିଲା, ଶ୍ରଦ୍ଧାରେ ଦେଲେ ଏବଂ ସର୍ବଗ୍ରାହୀ ସ୍ନେହାର୍ପିତ ଦ୍ରବ୍ୟ ପାଇଲାମାତ୍ରକେ ମଣୋହ କଲେ । ଏବେ ଘରକୁ ଫେରିକର, ମା' କାତର ହୋଇ ଲୋଡ଼ୁଥିବେ କହି କେହି ଗୋପୀ କୁମାରଙ୍କୁ କାଖେଇ ଯଶୋଦାଙ୍କ ଆଗରେ ଉଭା କରାଇଲେ । 'କାହିଁ ଥିଲୁବୋଲି ପଚାରି ମା' ଚୁମ୍ବନ ଦେଇ କୋଳରେ ବସାଇଲେ । ତତ୍ପରେ ଶ୍ରୀଅଙ୍ଗରେ ତୈଳମର୍ଦ୍ଦନ କରି ଝୀନବସନରେ ମାର୍ଜନ କଲେ ଏବଂ କୌଶେୟ କାଛ ପିନ୍ଧାଇ ଦିବ୍ୟଅନ୍ନ ଭୋଜନାନ୍ତେ ତାଙ୍କର ଆଚମନାଦି ବିଧି ସମାପନ କଲେ ।

କଲ୍ପେ ବସି କଳ୍ପନା କଲେ ବାଲଲୀଳା-ସ୍ତବ ଆସ୍ମୃତି ହୁଏନାହିଁ । ଭକ୍ତକବି ବିନୟ-ନମ୍ରସ୍ୱରରେ କହନ୍ତି, "ମୋର ବୁଦ୍ଧି-ବିବେକ କେତେ; କୋଟିଏ କୋଟି କଣ୍ଠରେ ମୁଁ ଗୋଟିଏ; କିଏ ଗଗନ-ତାରା ଲେଖିବ, ବରଷାଧାରା ଗଣିବ, ସିନ୍ଧୁଲହରୀ ସଂଖ୍ୟାକରିବ, ଅବା ପୟୋନିଧି ପହଁରିପାରିବ ? ଏସମସ୍ତ ବା କେହି କରିପାରେ; କିନ୍ତୁ କୃଷ୍ଣମହିମା କେହି କଳିପାରିବନାହିଁ । କୃଷ୍ଣନାମ ମୂର୍ତ୍ତିମନ୍ତ ଅମୃତବିନ୍ଦୁ, ତାହା ପର୍ବତପ୍ରମାଣ ତୂଳାରେ ଅଗ୍ନିକଣାତୁଲ୍ୟ ପାପି-ପାପ ଧ୍ୱଂସକରି ବାରିଦ-ପଟଳତୁଲ୍ୟ ତାହାର ହୃଦୟରେ ଅମୃତ-ଧାରା ବର୍ଷଣ କରେ ।"



# ଷଷ୍ଠ ପରିଚ୍ଛେଦ ।



'ଅଞ୍ଜନ-ବରନ କେଶବ' ବଳରାମଙ୍କ ସଙ୍ଗରେ ଯେତେ ନାନା ରଙ୍ଗରେ ଲୀଳା କରନ୍ତି । କେତେବେଳେ ଗୋପସୁତମେଳରେ ନବନୀତ ନେଇ ପଳାନ୍ତି, କେତେବେଳେ ଗୃହକର୍ମ କରିବା ନଦେଇ ଜନନୀଙ୍କୁ ଚଳାନ୍ତି, ତେବେ ବା କାହା ସଙ୍ଗରେ କୋଳପାଇଁ କଳିକରି କୋଳରେ ବସି ମାତାଙ୍କଠାରେ ଅଳି କରନ୍ତି । କେତେବେଳେ କାନ୍ଧ କଣ୍ଠରେ କଣ୍ଠ ଛନ୍ଦ ସଖାଙ୍କ କାଖରେ ବସନ୍ତି; କେତେବେଳେ ପୁଣି ରଜନୀରେ ନନ୍ଦକାନ୍ଧରେ ବସି ଚନ୍ଦ ମାଗନ୍ତି; 'ଜହ୍ନମାମୁ ! ଆସ ଆସ; ମୋ କାହ୍ନୁ ମଥାରେ ଟିକାଟିଏ ଦେଇଯାଅ' କହି ନନ୍ଦ କୁମାର-କପାଳରେ ମଟି ଅଙ୍ଗୁଳିରେ ଟିପା ମାରି କୁମାରଙ୍କ ମନ ତୋଷ କରନ୍ତି ।·ଅଳ୍ପଦିନ ମଧ୍ୟରେ ସେ "ଗୋଧନ-ସୋରେହା" କାମି-କାମଦୁହା ଇଚ୍ଛୁକ ହୋଇ କୌତୁକରେ ଗାଈଦୁହାଁ ଶିଖିଲେ । କ୍ରମେ ସେ ବତ୍ସା ରକ୍ଷି-ପାରିବାର ଦେଖି ଗୋପୀମାନେ ମହାସୁଖୀ ହେଲେ ।

ଶ୍ରୀକୃଷ୍ଣଙ୍କ ଉପରେ ଅତଶୟ ସ୍ନେହବଶତଃ ଦିନେ ଜଣେ ଗୋପୀ ଯଶୋଦାଙ୍କଠାରେ ଅଭିମାନ କରି କରୁଣସ୍ୱରରେ ଅନ୍ୟ ଗୋପୀକୁ କହିଲା:—"ଦେଖ ନନ୍ଦଘରେ କି ସୁଖ ନାହିଁ ! ଏ ପୁଅ ପୁଣି ବୃନ୍ଦା-ବନକୁ ଯାଉଛି; ପୁଅ ଉପରେ ଏତେ ନିର୍ଦ୍ଦୟ ! ତାଙ୍କର ଧନକୁ ଧିକ୍ ! ବିଧାତାର କି ବିଚାର ! କୋଟି ଲକ୍ଷ୍ମୀ ଯାହାଙ୍କର ଚରଣସେବା ପାଇଁ ଇଚ୍ଛୁକ, ସେ ପୁଣି ବନଗମନ କରୁଛନ୍ତି । ଅରୁଣସମ ଚରଣରେ କେତେ ଲକ୍ଷଣ ବିରାଜୁଛି, ଉଜ୍ଜ୍ୱଳନଖଚନ୍ଦ୍ରମଣ୍ଡଳପର ନଖ ତାରତର ବିଶୁଅଛି । ଜଙ୍ଘାଯୁଗ କରି-ଜାନୁ, ବା କରି-ଶାବକ-କର ଅତା ଶିଶୁମନ୍ଦଟ-ରମ୍ଭାତରୁକୁ ସୁନ୍ଦର ପଣରେ ଧିକ୍କାରୁଛି । ସୂକ୍ଷ୍ମକଟି ଓ ବିଶାଳ ବକ୍ଷସ୍ଥଳ ଅତିମନୋହର । ବାହୁଯୁଗଳ ମାଳୋପ୍ଳଳ ଓ ରଙ୍ଗକୁମୁଦର ଦଶ୍ମାପରି ଶୋଭା ପାଉଛି । କଣ୍ଠକଣ୍ଠିନାସାର ଶୋଭା କବି-ଭାଷାର ଅତୀତ । ଏ

ଅକଳଙ୍କ-କଳାକରଜିତ ଶ୍ରୀମୁଖ, ଏ ରୂପମାଧୁରୀ ବିଧି କେତେକାଳଯାଏ ବସି ଗଢ଼ିଥିଲା । କୁମାର ଆମ୍ଭର ହୋଇଥିଲେ, ଆମ୍ଭେ ତାଙ୍କୁ ପଲଙ୍କରେ ବସାଇ ଇଷ୍ଟଦେବତାରୁ ଅଧିକ କରିଥାନ୍ତୁ । ରୂପଶ୍ରୀ, ସୁରଙ୍ଗ ଅଧର, ଗ୍ରୀବାଣୀ-ଭଙ୍ଗୀ, ମନୋରମ ଲଲାଟ, ସସ୍ମିତ ବଦନ ଓ ଚତୁର କଥା ଲୋକଙ୍କୁ ମୋହିତ କରେ । ସର୍ବୋପରି ଧନ୍ୱାକୃତ ଭ୍ରୂଲତା ଧୀରେ ଧୀରେ ନାଚି ବିଧି-ବିଧାନକୁ ସିଦ୍ଧ କରୁଛି । ଏମନ୍ତ ପୁରୁଷୋତ୍ତମ ଶ୍ରୀକୃଷ୍ଣ କ କମଳୀ, ଧବଳୀ, ମାଳୀ, ପରିମଳୀ ଗାଈମାନଙ୍କୁ ଡାକିବାର ପାଇଁ ? କାଳ କାହାର ଆୟତ୍ତ ନୁହେ; ଦେଖ, ଶ୍ରୀମନ୍ତ ଶ୍ରୀହରି କନ୍ଧରେ ପଶୁରଜ୍ଜୁ କେମନ୍ତ ସୁନ୍ଦର ବହିଛନ୍ତି ।

•

ଅନ୍ୟ କେହି କହିଲା, "ଯେତେବେଳେ ମହାକୁଳ ଘରେ ବଢ଼ିଲେ, ସେତେବେଳେ ଯେତେହେଲେ କଣ ହେବ କଠାଉ, ଲଉଡ଼ି, ଶିଙ୍ଗା, ବଂଶୀ ଓ ବାଡ଼ିରେ ତାଙ୍କର ଆସ୍ଥା ହେଲାଣି । ଗୋଧନ ନରଖିଲେ କଅଣ ଖାଇବେ କହି; ଯାହାର ଯେ ଜୀବିକା, ତାହା ସେ ନକଲେ କିଏ ସେ ଦେଇ ନେବ ?" କୁମାର ବନକୁ ଗମନ କରିବାରୁ ଏହିପରି ନାନା କଥା ପକାଇ ଗୋପୀମାନେ କେହି କେହି ସହର୍ଷ, କେହି କେହି ବା ବିମର୍ଷ ହେଲେ ।

କାମପାଳ ସହି ବତ୍ସ ରଖୁଁ ରଖୁଁ ଶ୍ରୀକୃଷ୍ଣ ବତ୍ସାସୁରକୁ ବୃକ୍ଷରେ ପିଟି ବଧ କଲେ । କିଛିଦିନ ପରେ ବକର ଥଣ୍ଟ ଚିରି ପ୍ରାଣ ନେଲେ । ପୁଣି ଅଘାକୁ ବିନାଶ କରି ଗୋପସୁତମାନଙ୍କୁ ଚକିତ କଲେ । ଏ ବିଚିତ୍ର କଥାମାନ ସେମାନଙ୍କର କେବେ ପାଶୋରି ଗଲାନାହିଁ । ତାଳବନ-ପାଳ ବୃକ୍ଷରୁ ତାଳକୁ ଯେପରି ଗୋଟି ଗୋଟି କରି ଖସାଇ ନିଃଶେଷ କରେ, କେଶବ କାଳଖଣ୍ଡମାନଙ୍କୁ ଜଣ ଜଣ କରି ମାରି ସେହିପରି ନର-ରାକ୍ଷସ-କୁଳ ନିର୍ମୂଳ କରିବାକୁ ଲାଗିଲେ । ସେଥି ସଙ୍ଗେ ସଙ୍ଗେ କୁଞ୍ଜବିହାରୀ କୁଞ୍ଜକାନନରେ ବ୍ରଜବାଳ ସଙ୍ଗରେ ନାନାଭାବରେ ବିହାର କରୁଥିଲେ । କ୍ରୀଡ଼ାଦୃଶ୍ୟ ଅତି ଚମତ୍କାର; କେହି ବାଳକ ନାଚି ନାଚି ଯାଉଛି, କେହି

ତଳ ପରି ଏକଧ୍ୟାନ ହୋଇ ବସିଛନ୍ତି, କେହି ଭୃଙ୍ଗଝଙ୍କାର ଶୁଣି ଅହଙ୍କାର କରି ହୁଙ୍କାର କରୁଛନ୍ତି, କେହି ବା ଆଦରରେ କେକିଶିଶୁ ପଛରେ ଗୋଡ଼ାଉଛନ୍ତି, କେହି ପୁଣି କାହା କରରେ କର ମାରି ଖିରଗତରେ ପଳାଉଛନ୍ତି, କେହି କେହି ବାହୁଯୁଦ୍ଧ କରି ଧରାଧରି ହେଉଛନ୍ତି; କେତେବେଳେ ଫଳପାଇଁ ଲଢ଼ାଲଢ଼ି ହେଉଛନ୍ତି, କେତେବେଳେ ବାଳକମାନେ ଆଖିବୁଜାଳି ଖେଳୁଛନ୍ତି, କେତେବେଳେ ପୁଣି କୃଷ୍ଣଙ୍କୁ ନରପତି କରି ଶିରରେ ପୁଷ୍ପଛତ୍ର ଧରି ସଖାପନ୍ତ ମହିମା ମହିମା ବୋଲୁଛନ୍ତି ।

ଏହିପରି ନାନା ପ୍ରକାର ଖେଳ ଖେଳୁଁ ଖେଳୁଁ ପ୍ରଲମ୍ବାସୁର ବଳରାମଙ୍କୁ ହରଣ କରିବାରୁ ଶ୍ରୀକୃଷ୍ଣ ଅବଳମ୍ବେ ତାହାର ଆଣି ଲୁଚି ପ୍ରାଣ ନେଲେ । କରାଳ ତମୋ-ଦାବାନଳ ଗିଳି ଅଗ୍ନି ପ୍ରଶମନ କଲେ ବନଭୋଜନ କାଳରେ ବ୍ରହ୍ମା କେତୋଟି ବତ୍ସାହରଣ କରିବାରୁ ନନ୍ଦବାଳ ତାହାଙ୍କୁ ନରତଶସ୍ଥ ଅପଦସ୍ଥ କଲେ । ପୁଣି ଗୋବର୍ଦ୍ଧନ ଧାରଣ କରି ସୁରପତିଙ୍କର ଗର୍ବ ଖର୍ବକଲେ । ଭଗବାନ ଭକ୍ତମାନଙ୍କୁ ରକ୍ଷାକରିବା-ପାଇଁ ସେମାନଙ୍କର ଐହିକ ଓ ଦୈହିକ ଦୁର୍ବିପାକମାନ ଏହିରୂପେ ଖଣ୍ଡନ କରି ବନଗୃଷ୍ଟ ହୋଇ ଗୋଧନ ରଖୁଥିଲେ ।

କୁମୁଦବାନ୍ଧବଙ୍କର ଉଦୟ ଓ ଅବ୍ଜ-ବାନ୍ଧବଙ୍କର ଅସ୍ତଗମନ-କାଳରେ ପୀତବାସଙ୍କର ଗୃହକୁ ଫେରିବା ଶୋଭା ଅତି କମନୀୟ । ମସ୍ତକରେ କଳାପି-କଳାପ--ମଣ୍ଡିତ ମୁକୁଟ କାଦମ୍ବିନୀ--କୋଳରେ ଇନ୍ଦ୍ରଧନୁସମ ସୁନ୍ଦର ଦିଶେ । ଅର୍ଦ୍ଧଚନ୍ଦ୍ରାକୃତ କପାଳର ଊର୍ଦ୍ଧ୍ୱଭାଗରେ କସ୍ତୁରୀତିଳକ ବିରାଜିତ ହୋଇ ଦର୍ଶକର ହୃଦୟ ପୁଲକିତ କରେ । କପାଳତଟରେ ଗୁଞ୍ଜର ମୁଣ୍ଡାଳି କି ସୁନ୍ଦର ମାନୁଥାଏ, ମନେ ହେଉ-ଥାଏ ଅରବିନ୍ଦ ପାଶରେ ଅଳିବୃନ୍ଦ ଅଙ୍ଗକୁ ଅଙ୍ଗ ଛନ୍ଦେଇ ରହିଥାନ୍ତି । କର୍ଣ୍ଣରେ ମଣିମୟ ମକରକୁଣ୍ଡଳ ଦୋଳି, ଦୁଇଟି କମଳପାଶରେ ଦୁଇଟି ସୂର୍ଯ୍ୟ ଖେଳିଲାପରି ବୋଧହେଉଥାଏ । ଗଳାରେ ମୁକ୍ତାମାଳ ଦେଖିଲେ ଅନୁମାନ ହେଉଥାଏ, ଯେପରି କାଳିନ୍ଦୀବକ୍ଷରେ କଳହଂସପନ୍ତି ଉଡ଼ି

କାଳିକା କୋଳରେ ନୀରବରେ ଉଡ୍ଡୀୟମାନ ବଳାକାବଳି କଣ୍ଠରେ ହାର ହୋଇଥାଏ । ତାରକକାନ୍ତ ମୋତି ନାସାରେ ଦୋହଲି ରଙ୍ଗ-ଅଧରର ସନ୍ନିକଟ ହେବାରୁ ଲୋହିତାଭ ଦିଶୁଥାଏ, କିଙ୍କିଣୀଶ୍ରେଣୀ ମଧୁର ନିଃସ୍ୱନ କରୁଥାଏ, କରରେ କୁବଳୟ-ବଳୟ ଓ ଅଙ୍ଗରେ ପବିତ୍ର ଗୋରଜ ବିରଜିତ ଏବଂ ରଙ୍ଗଜାମୁଡାଳି କଦମ୍ବଲଘୁମଣି ବଳି ସୁଷମ ହୋଇଥାଏ । ଉଷ୍ଣୀଷୀକୃତ ବନମାଳ କଣ୍ଠରେ ବିଲମ୍ବିତ; ମଧୁକରମାନେ ପୁଣି ତାହା ମହାସୁଖରେ ଚୁମ୍ବି ପରାଗରେ ଭୋଳ ହେଉଥାନ୍ତି । ବ୍ରଜବାଳକମାନେ, କେହି ବେଣୁଶୃଙ୍ଗରେ ଗାନ କରୁଥାଏ, କିଏ ତାହାକୁ ବଳି ପଟକାହାଳି ବଜାଉଥାଏ; କିଏ କରତାଳି ଦେଇ ଶଉଡ଼ଗୀତ ଗାଇ ନାଟ କରୁଥାଏ, କେହି ଧବଳୀ, କମଳୀ, ଶ୍ୟାମଳୀ, ପରମଳୀ, ହଂସୀ, ବଂଶୀପ୍ରିୟା, ବଉଳୀ, କୁଞ୍ଜଗଳୀ ପ୍ରଭୃତି କେତେ ନାମ ଧରି କେତେପ୍ରକାରେ ଗାଈମାନଙ୍କୁ ଡ଼ାକୁଥାନ୍ତି । ଅଗ୍ରଗାମୀ ସୁରଭିନିକର ପଛରେ ବ୍ରଜ-ତନୟ ତାରକା-ମଣ୍ଡଳମଧ୍ୟରେ ଯଦୁ-ଚନ୍ଦ୍ରମା ବିଜେକରିଥାନ୍ତି ।

ବତ୍ସାବଚ୍ଛେଦବିଧୁରା ଘଟୋଧ୍ନୀ ଧେନୁମାନେ ସନ୍ଧ୍ୟାଗମରେ ଗୋଷ୍ଠ-ବିହାରୀଙ୍କ ସହ ଗୋଷ୍ଠକୁ ଫେରିଲା ବେଳେ ସର୍ବପ୍ରାଣି-ହୃଦୟରେ ମିଳନ-ଆଶା ଜାଗ୍ରତ ହେଲା । ଗୋପୀ-ତୃଷିତ-ଚକୋରୀ ନୟନ-ଚଞ୍ଚୁ-ଦ୍ୱାରା ଜନମନୋଲ୍ଲୋଭ ଶ୍ରୀହରି-ଶୋଭାମୃତ ପୂର୍ଣ୍ଣକରି ପାନକରିବାକୁ ଲାଗିଲେ । ପ୍ରେମଶାଣିତ କୃପାକଟାକ୍ଷ-ବାଣ ବେନପାର୍ଶ୍ୱକୁ ଫିଙ୍ଗି ଭଗବଦ୍ଦୃଷ୍ଟି ଭକ୍ତ-ଜଗତ ଜୟକଲା । ମୁଖର ପ୍ରସନ୍ନ ଭାବ ଦେଖି ମାନବ କେତେ ମାତ୍ର, ମାନବ-ପୂଜିତ ଦେବତା ମଧ୍ୟ ଦେବାଦିଦେବଙ୍କର ସେବକ ହେବାକୁ ଇଚ୍ଛାକଲେ । ପୂର୍ବଜନ୍ମ--ସଂସ୍କାରବଶତଃ ଗୋପିକାମାନେ ବେଦବୁଦ୍ଧ ଭକ୍ତ; ସୁତରାଂ ଭଗବାନଙ୍କ ଆଗମନ ଦର୍ଶନ-କରି ସେହି ପ୍ରବୁଦ୍ଧ ଭକ୍ତମାନେ ଆନନ୍ଦରେ ଅଧୀର ହେଲେ । କେହି ଭକ୍ତ ଓ ଝାର-ଝଙ୍କାରସହ କର୍ଣ୍ଣନାସିକା ପ୍ରଭୃତିର ସ୍ପର୍ଶନାଦ ମୁଦ୍ରାଭଙ୍ଗି କରି ସଭକ୍ତି ଅନ୍ତରରେ ଭଗବାନଙ୍କର ଆବାହନ କଲେ ।

କେହି ଭକ୍ତ ତଦ୍‌ଗତପ୍ରାଣ ହୋଇ କର୍ମପଥ ପରିହାରପୂର୍ବକ କୃଷ୍ଣ-ଦର୍ଶନପାଇଁ ଅଗ୍ରସର ହେଲେ । କେଉଁ ଭକ୍ତ ପୁଣି କର୍ମ-କଦଳୀ-ତରୁ ରୋପି ଭକ୍ତି-ମଙ୍ଗଳକୁମ୍ଭ ସ୍ଥାପି, ଅଭ୍ରାନ୍ତ-ପୀତବାସ-ବେଷ୍ଟିତ ଜ୍ଞାନ-ଗନ୍ଧସାର ଜାଳି, ସଦ୍‌ବୃତ୍ତି-ଚନ୍ଦ୍ରାବଳୀ ଓ ସଦ୍‌ଗୁଣ-ପଦ୍ମାବଳୀ ମଣ୍ଡନ-କରି ସୁଦୃଢ-ପୁଷ୍ଟ ବୃଷ୍ଟି-ପୂର୍ବକ ସମଦୃଷ୍ଟି-ଦର୍ପଣ ସ୍ଥାପନାନ୍ତେ ଉଜ୍ଜ୍ୱଳ-ମୁଖଶ୍ରୀ ହୃଦବାସରେ ଶ୍ରୀକୃଷ୍ଣଙ୍କ ପଦାର୍ପଣର ପ୍ରତ୍ୟାସ କଲେ ।

ଯେଉଁଠାରେ ଭକ୍ତି ଓ ପ୍ରେମ ଭକ୍ତ ଓ ଭଗବାନଙ୍କୁ ପରସ୍ପରର ସମ୍ମୁଖୀନ କରେ, ସେଠାରେ ଯେ କେତେ ହାବଭାବ-ବିଭବର ସୃଷ୍ଟି ହୁଏ, ସେତେବେଳେ ଯେ କେତେ ଆନନ୍ଦଉତ୍ସବ ଉଚ୍ଛ୍ୱସିତ ହୁଏ, ତାହା କିଏ ବୁଝିପାରେ ? ତାହା କେବଳ ଭକ୍ତ ଭଗବାନ କଟାକ୍ଷ-କଟାକ୍ଷ-ଭେଟରେ ପ୍ରତ୍ୟକ୍ଷ କରନ୍ତି । କେହି ଭକ୍ତ ଭକ୍ତିପୂର୍ଣ୍ଣ ହୃଦୟରେ ଭକ୍ତ-ଆକର୍ଷଣକାରୀ ଭଗବାନଙ୍କୁ ପ୍ରାଣନାଥ ବୋଲି ନିମନ୍ତ୍ରଣ କରେ; କେହି ବା ମନବଚନକର୍ତ୍ତବ୍ୟ ତାହାଙ୍କଠାରେ ସମର୍ପଣକରି ତାଙ୍କ ଚରଣରେ ଶରଣ ପଶେ । ବ୍ରଜବାଳାମାନେ ମଧ୍ୟ ଜ୍ଞାନ-କର୍ମ-ଭକ୍ତିମାର୍ଗ ଅନୁସରଣକରି ଶ୍ରୀକୃଷ୍ଣଙ୍କୁ ପ୍ରାଣର ଏକମାତ୍ର ଆରାଧ୍ୟ ଦେବତା ବୋଲି ମଣିଲେ, ଏବଂ ସଙ୍କଳ୍ପ, ତନ୍ମୟବୃତ୍ତି, ମମତାତ୍ୟାଗ, ମୋହତ୍ୟାଗ, ନୀଚତା, ଦର୍ଶନ, ଉନ୍ମାଦ, ମୂର୍ଚ୍ଛା, ମରଣ, ଏବଂ ଯୋଗ ଓ ମୁକ୍ତି, ଏହି ଯୋଗାଭ୍ୟାସମାନ କ୍ରମେ କ୍ରମେ ସାଧନ-କରିବାକୁ ସେହିକ୍ଷଣଠାରୁ ଯତ୍ନବତୀ ହେଲେ । ଯେପରି ସୁଧାଂଶୁ-କୁମୁଦ-ଭାବ ମୃଣାଳ-ଶ୍ରେଣୀ ହଂସ ସୁଦ୍ଧା ଜାଣିପାରେନାହିଁ, ସେହି-ପରି ଭକ୍ତ-ଭଗବାନଙ୍କର ଯୋଗାଯୋଗ ଭାବ ଅନ୍ୟର ଅଲକ୍ଷ୍ୟ ଓ ଅଜ୍ଞାତ । ସର୍ବ-ହୃଦ-ନନ୍ଦନ ଓ ସର୍ବ-ଜନ-ବନ୍ଦନ ହରି ବଳରାମ ଏହିରୂପେ ଗୃହକୁ ଫେରି ନିତ୍ୟ କର୍ମ ସମାପନାନ୍ତେ ମଶୋହି ବଢ଼ାଇ ନିଦ୍ରା ଗଲେ ।

# ସପ୍ତମ ପରିଚ୍ଛେଦ ।



ଭକ୍ତହୃଦୟଚନ୍ଦନ ଗୋଷ୍ଠରୂପଧର ତ୍ରୈଲୋକ୍ୟବନ୍ଦନ ମୁକ୍ତକାମି-
ଶ୍ରୀହରଚନ୍ଦନ କାଳନ୍ଦୀଜଳକଲ୍ଲୋଳ--କୌତୁକକାରୀ କଦମ୍ବତଳବିହାରୀ
କଳବେଣୁଧାରୀ କେକି-ପୁଚ୍ଛ-ମଣ୍ଡନ କନକନିଭ-ବାସ ଶ୍ରୀନନ୍ଦନନ୍ଦନ
ଶ୍ରୀକୃଷ୍ଣ ଭକ୍ତମାନଙ୍କ ସଙ୍ଗରେ କ୍ରୀଡ଼ା କରିବାପାଇଁ ଅଭିଳାଷ କଲେ ।
ଭଗବାନ ସ୍ଥାନାସ୍ଥାନ ନିର୍ବିଶେଷରେ ପୂଜାମଣ୍ଡପରେ, ଭକ୍ତର କର୍ମ-
କୁସୁମ-ତୋଟାରେ, ପ୍ରକୃତିର ଦୃଶ୍ୟପଟରେ ଜ୍ଞାନୀର, ନୀରସ-ଜ୍ଞାନାଗ୍ନି-
କୁଣ୍ଡରେ ଓ ଭକ୍ତ-ରସାଶ୍ରୟ ଘାଟରେ ଭକ୍ତକୁ ଦେଖା ଦେଇ
କେତେବେଳେ ସନ୍ତୁଷ୍ଟ ହଅନ୍ତି, କେତେବେଳେ ତାହାର ମାୟାମଳ
ଦୂର କରନ୍ତି, କେବେ ବା ଇଙ୍ଗିତ ଓ ଅଙ୍ଗଭଙ୍ଗୀରେ ମନକୁ ଆକର୍ଷଣ କରି
ବୃତ୍ତିନିଚୟକୁ ତନ୍ମୁଖୀ କରନ୍ତି ଏବଂ ଯଶକୁସୁମମାଳିକା ପିନ୍ଧାଇ ଦେଇ-
ସ୍ତୁତିନନ୍ଦନାଦି ଶିକ୍ଷା ଦିଅନ୍ତି । ପୁଣି ଏ ସଦୟ-ଦର୍ଶନର କାଳାକାଳ ନାହିଁ;
ଅଜ୍ଞାନ-ତିମିରମୟ ଅମାରଜନୀରେ, କରାଳ କୁଟିଳ ରିପୁ-ପ୍ରଖରଗତିରେ,
ଭକ୍ତିକଳାକର-ଉଦୟ-ଉତ୍ସବରେ, ଇନ୍ଦ୍ରିୟ-ଗ୍ରାମ-କୋଳାହଳରେ, ବା
ଅବିଦ୍ୟା-ବିଦ୍ୟାର ସନ୍ଧିକାଳରେ ଅନ୍ତର୍ଯ୍ୟାମୀ ଭକ୍ତ-ସମକ୍ଷରେ ଆବିର୍ଭୂତ
ହୁଅନ୍ତି । ଭଗବାନ ଶ୍ରୀକୃଷ୍ଣ ଦୂତୀ, ରଜକୀ, ନର୍ତ୍ତକୀ, ବେଶକାରିଣୀ, ମାଳିନୀ,
ଶିଳ୍ପକାରିଣୀ ଓ ବିଦ୍ୟାଧରୀ ବେଶରେ କୁଞ୍ଜକାନନରେ କୁସୁମ-
ତୋଟାରେ ନଦୀତଟରେ, ଜନହୀନ ପରିଖାଦିରେ ବା ଜଳଘାଟରେ ହିମ ରଜ-
ନୀରେ, ସ୍ୱଗୋବାହୀ ପ୍ରଭଞ୍ଜନ କାଳରେ, ଚନ୍ଦ୍ରୋଦୟପଟରେ, ଜନକୋଳା-
ହଳରେ ଅବା ସନ୍ଧ୍ୟାଗମରେ ବିଚରଣ କରି ଗୋପିକାମାନଙ୍କର ମନ
ଧୀରେ ଧୀରେ ଆକର୍ଷଣ କଲେ । ପୁଣି କପଟ-କୁଶଳ କାମରୂପୀ ଯଦୁପତି
କାଚରୀ, ଶଙ୍ଖାରୀ, କୈବର୍ତ୍ତ, ମାଳୀ କଳାଭୂତ ଓ ଘାଟୁଆଳ ରୂପ ଧରି
ପ୍ରଲୋଭନ, ପୁରସ୍କାର, ଭୟ ପ୍ରଦର୍ଶନ, ଶରଣ ଓ ତାରଣ ବଳରେ ଗୋପୀ-
ମାନଙ୍କୁ ଆତ୍ମସମର୍ପଣ ଶିକ୍ଷାଦେଲେ । କେତେବେଳେ ମୋହନମୁରଲୀ-
ଧ୍ୱନିରେ ମନ ଉଚାଟନ କରି ସେମାନଙ୍କୁ କୁଞ୍ଜବନକୁ ନେଉଥିଲେ ଏବଂ

ସେମାନଙ୍କ ମନ ମୋହିବାପାଇଁ କଳାମେଘ ବେଶ ଧରୁଥିଲେ; ସେ ବେଶରେ କଳାପମୁକୁଟ ଇନ୍ଦ୍ରକୋଦଣ୍ଡ ମୋତିହାର ବଳାକାମଣ୍ଡଳୀ, ପୀତବସନ ଝଟକ ବିଜୁଳୀ, କଙ୍କିଣି ମଞ୍ଜୁଳରବ ମଧୁର ନିର୍ଘୋଷ, ଏବଂ କଥାମୃତବୃଷ୍ଟି ଧାରଧାର । ଏ ଧାରଧାର କାହାର ଶ୍ରବଣ-ଚକୋରକୁ ନ ରୁଚଇ ? ଏ କଳାମେଘ-ଦର୍ଶନରେ କାହାର ମନ-ମଣ୍ଡୂକେକା ନ ନାଚଇ ? ଦିନେ ଦିନେ ନଟବର ବେଶ ହୋଇ କପାଳରେ କସ୍ତୁରୀ-ଚିତା ଓ କର୍ଣ୍ଣରେ କୁଣ୍ଡଳ ଘେନି କଥାରେ ଓ କଟାକ୍ଷରେ ଗୋପୀମାନଙ୍କର ଚିତ୍ତ ହରୁଥିଲେ । କେଉଁ ଦିନ ସର୍ବାଙ୍ଗଚନ୍ଦନ ହୋଇ ଗଣ୍ଡକପୋଳରେ କସ୍ତୁରୀ-ତିଳକ ଘେନି ବେକଷଣ୍ଡା ନିକଟରେ କେତକୀପାଖୁଡ଼ା ବେଢା କମନୀୟ-ଜୁଡ଼ା ବାନ୍ଧି ଗୋପଦାଣ୍ଡରେ ବୁଲୁଥିଲେ । କେତେବେଳେ ନନ୍ଦମା-ଇଜଣରେ ବାହାରି ସଖାମାନଙ୍କୁ ଉଚ୍ଚସ୍ୱରରେ ଡ଼ାକନ୍ତି; ପଦ୍ମତୋଳା ଶୁଣି ନାଗ ଯେପରି ବିଳରୁ ବାହାରେ, ଗୋପସୁତମାନେ ସେ ଡ଼ାକ କର୍ଣ୍ଣରେ ଶୁଣି ସେହିପରି ସଦନରୁ ବାହାର ହୁଅନ୍ତି ।

ଦିନେ ଭ୍ରମଣକାଳରେ କେଉଁ ଗୋପୀକୁ ଅନାଇଁ ଶ୍ରୀକୃଷ୍ଣ ସହାସ୍ୟ-ସ୍ୱରରେ କହିଲେ,—'ହୃଦୟର ଭକ୍ତିବଳରେ ତୁମ୍ଭେ ମୋତେ ସମ୍ପୂର୍ଣ୍ଣ ତୁମ୍ଭର କରିଅଛ ।' ଗୋପୀ ଉତ୍ତର କଲା,—'ଏଥିରେ ଆଶ୍ଚର୍ଯ୍ୟ କଣ ଅଛି ? ଯାହାର ଯାହା କର୍ମ, ସେ ତାହା କଲେ ଧର୍ମ, ନ କଲେ ଅଧର୍ମ; ମୋର ହୃଦୟ ଯଦି ତାହା କରିଅଛି, ତେବେ ତାହା ସ୍ୱକାର୍ଯ୍ୟ ମାତ୍ର କରିଅଛି ।' ତତ୍ପରେ ଗୋପୀବଲ୍ଲଭ ଅନ୍ୟ ଗୋପୀକୁ କହିଲେ,—'ଏତେ ସୂକ୍ଷ୍ମ ହୃଦ-ତନ୍ତ୍ରୀରେ ଏତେ ଉଚ୍ଚ ଗୁରୁତ୍ୱ ଧାରଣ ଓ ପୋଷଣ କରି ତୁମ୍ଭେ ଏ ସଂସାରରେ ଧୀରେ ଧୀରେ ଅଗ୍ରସର ହେଉଅଛ; କିଏ ତୁମ୍ଭଙ୍କୁ ଖରୁ ବୋଲିପାରେ ? ଏଥିରେ ଗୋପୀ ଉତ୍ତର ଦେଲା,—'ଫଳ କି କେବେ ଲତାକୁ ଭାର ହୁଏ ? ଆପଣ ପଗ ପର୍ବତ ହାତରେ ଧରିଥିଲେ, ଏବେ ଏପରି କଥା କହୁଛନ୍ତି କିପରି ? ଏ ଗୋପରେ ଏପରି କେହି ବିବେକୀ ଅଛି, ଯେ ମୋର ହୃଦୟସ୍ୱର ପ୍ରତ୍ୟକ୍ଷପରୀକ୍ଷା କରିପାରିବ ? ହେ ଭାବଗ୍ରାହୀ, ମୋର ହୃଦ୍‌ଗତ ଭାବ ଗ୍ରହଣ କରନ୍ତୁ;

ଚତୁର କଥା କ ହେବ ।' କୃଷ୍ଣ ହସି ହସି ବୋଇଲେ,—'ପାଇଲି, ପାଇଲି, ଅଧିକ କଣ କହିବି, ଆଜଠାରୁ ମୁଁ ତୁମ୍ଭର ସେବକ—ଭକ୍ତ ହେଲି ।' ଗୋପୀ ଚମକିତ ହୋଇ କହିଲା—'ମୁଁ ସିନା ଆପଣଙ୍କର ସେବିକା ଭକ୍ତ । ହେ ହରି କୃପା କରନ୍ତୁ, ଆପଣଙ୍କଠାରେ ମୁଁ ଲୁଚିଯାଏଁ ।'

ତଦନନ୍ତର ଆଉ ଜଣେ ଗୋପୀକୁ ଶ୍ରୀହରି ବୋଇଲେ,—"ଜ୍ଞାନ ଓ ଭକ୍ତିବଳରେ ବଳବତୀ ହୋଇ ସଂସାରରେ କେହି ଯେ କଥା କରିନାହିଁ, ତୁମ୍ଭେ ତାହା କରୁଅଛ; କିଏ ତୁମ୍ଭଙ୍କୁ ଅବଳା କହେ ? ଜ୍ଞାନବଳରେ ଶଙ୍କର ଅମରଙ୍କୁ, ତଣକରି ଭକ୍ତିରେ ମୋତେ ଆଜ୍ଞାକାରୀ କଲ" । କୃଷ୍ଣ-ବୋଲି ଶୁଣି ଗୋପୀ କହିଲା,—"ଜ୍ଞାନ ଓ ଭକ୍ତିବଳରେ ଧରଣୀରେ ଆମ୍ଭ କରଣୀ ଏତେ ବଡ଼ ହୋଇପାରେ । ଆମ୍ଭର ଯୋଗବଳରେ ବ୍ରହ୍ମାଦି ଦେବ ଅସ୍ଥିର ହୁଅନ୍ତି । ଅବଳାଶବ୍ଦକୁ ହେଳା କରନ୍ତୁନାହିଁ । ଭକ୍ତବତ୍ସଳ ନାମପାଇଁ ମୋପରି ଦୀନଦୁର୍ବଳ ଭକ୍ତ ହିଁ ଆପଣଙ୍କର ଏକମାତ୍ର ଭେଳା ।" କୃଷ୍ଣ କହିଲେ,—"ମୋର ଭକ୍ତ ହିଁ ସମ୍ବଳ; ତୁମ୍ଭେ ମୋତେ କଥାରେ କୃତାର୍ଥ କଲ; ତୁମ୍ଭପରି ଭକ୍ତଙ୍କର ଅହେତୁକୀ ଭକ୍ତି ଆସ୍ତୃତ ହେଉ ।"

ଅନ୍ୟ ଜଣେ ଗୋପବାଳାକୁ ଦେଖି ବ୍ରଜକିଶୋର ଏହିରୂପ ସାରଗର୍ଭ ବାଣୀ କହିଲେ,—"ତୁମ୍ଭର ମନ ଚନ୍ଦ୍ରରୂପୀ; ମନ ଏକସମୟରେ ବୀଜାକାରରେ ଥିଲା; ତୁମ୍ଭେ ଭୂମିଷ୍ଠ ହେବାପରେ ସେ କଦମ୍ବ-କୋରକ ସମ ବୃଦ୍ଧିବିକାଶ କଲା; ପୁଣି ତୁମ୍ଭର ଅଙ୍ଗସୌଷ୍ଠବ ସଙ୍ଗେ ସଙ୍ଗେ ତାହା କନ୍ଦୁକ ତୁଲ୍ୟ ସର୍ବାଙ୍ଗପରିପୁଷ୍ଟ ହେଲା, ମାତ୍ର ମାତୃଗୃହସ୍ଥ ଓ ବାହ୍ୟାଡମ୍ବରଶୂନ୍ୟ ହୋଇ କାନ୍ତିମନ୍ତ ନାରଙ୍ଗି ସଦୃଶ ଅନ୍ତରରେ ବିକାରପ୍ରାପ୍ତ ହେଲା; ତହୁଁ କିଛିକାଳପରେ ଔଦାସୀନ୍ୟ ଭଜି ରସାଳବତ୍ ଭକ୍ତି-ରସାଳ ହୋଇ ସବରେ ଉଜ୍ଜ୍ୱଳ ହେଲା; ତତ୍ପରେ କଣ୍ଠସ୍ଥାନ ରଜତ ଫଳୁଆପରି ନିର୍ବିକାର ଓ ଏକାଗ୍ରସୂକ୍ଷ୍ମମୁଖୀ ହୋଇ ଏବେ ବେଣୁବାଦୀ ତୁମ୍ଭ ପ୍ରାଣ୍ଟ ମୋ ନାମ ନିରନ୍ତ ଜପ କରୁଅଛି । ବାମଗୃହୀ ମନ

ଯେ କେତେବେଳେ କେତେରୂପ ଧାରଣ କରେ, ତାହାର ଉପମା ନାହିଁ କି ସୀମା ନାହିଁ ।" ଏହା ଶୁଣି ଗୋପୀ ବିନୟରେ କହିଲା,—"ମୁଁ ତ ମନପ୍ରାଣ ଆପଣଙ୍କଠାରେ ସମର୍ପଣ କରିଅଛି, ଯାହା ଇଚ୍ଛା ଆପଣ କରନ୍ତୁ ।" ରଙ୍କ ଯେପରି ଭୋଜନ-ଇଚ୍ଛାରେ କେବଳ ଲୋଭ ହେତୁରୁ ସବୁଠାକୁ ମନ କରେ, ଭକ୍ତ-ରଙ୍କ ଶ୍ରୀହରି ସେହିପରି ହୋଇ ଉତ୍ତର ଦେଲେ;—"ମୁଁ ତୁମ୍ଭର ମନମହାରାଜଙ୍କର ବଶମ୍ବଦ ପ୍ରଜା ହୋଇ ତାହାଙ୍କୁ ନିରନ୍ତର ସେବା କରୁଥିବି, ଏତିକି ମାଗୁଛି, ଆଉ କିଛି ନା ।" ଗୋପୀ କହିଲା,—"ଆପଣ ବ୍ରଜରାଜ ହୋଇ କିପରି ପ୍ରଜା ହେବେ ? ଏବେ ବୁଝିଲି, କୁସୁମକୀଟ କଠିନ କାଠକୁ କାଟେ, କିନ୍ତୁ କୋମଳ ଭାବରୁ ଫୁଲକୁ ଖଟେ । ଯେ ସର୍ବଶକ୍ତିମାନ୍ ହେଲେ ମଧ୍ୟ ଭକ୍ତ-ଭାବବଦ୍ଧ ହୋଇ ଭକ୍ତକୁ ଏପରି ଆଶ୍ୱାସନା ଦିଅନ୍ତି, ସେହି ତ ବ୍ରହ୍ମାଣ୍ଡର ଏକମାତ୍ର ଠାକୁର ।"

ଅନ୍ୟ ବ୍ରଜବାଳାକୁ ବ୍ରଜବିହାରୀ ମଧୁର ଭାବରେ କହିଲେ, "ତୁମ୍ଭର କି ସୌଭାଗ୍ୟ ! କର୍ମମୟ ଯୋଗସାଧନା-ଛଳରେ ଭକ୍ତି-ଗଙ୍ଗାଧର ବୁହାଇ ତୁମ୍ଭେ ଯୋଗିବର ଶିବତୁଲ୍ୟ ହୃଦୟକୁ ପୂତ କରିଅଛ, ତହିଁରେ ପୁଣି ପରାବିଦ୍ୟା-କଳାଧରର ଉଦୟ ହୋଇଅଛି । ତୁମ୍ଭେ ସନ୍ଦେହ-ପାଶ କାଟି ପ୍ରସନ୍ନ ଓ ତୁଷ୍ଟମନ ହୋଇଅଛ । ସୁତରାଂ ତୁମ୍ଭର ହୃଦୟରେ ମୁଁ ସଦା ବର୍ତ୍ତମାନ ରହିଅଛି ।" ଗୋପୀ କର ଯୋଡ଼ି ଉତ୍ତର କଲା,—"ପ୍ରଭୋ, ସେହିପରି ସଦା ବିରାଜ କରିଥାଆନ୍ତୁ !"

କୃଷ୍ଣ-ଗୋପୀଙ୍କର ଏହିରୂପ ଘେନାଘେନ-ବାଣୀ କିଏ କହି ଶେଷ କରିବାକୁ କ୍ଷମ । ତଥାପି କଥିତ ହେଲେହେଁ ସାଧୁ ରସିକ ଭକ୍ତମାନେ ଏହାକୁ ସାରଗର୍ଭ ମଣିବେ । ଅରସିକମାନେ ଏହାକୁ ପାଠକଲେ ମଧ୍ୟ ଏହାର ସ୍ୱାଦ କାହୁଁ ଜାଣିବେ ? ପଦ୍ମ ପୁଷ୍ପ ତଳରେ ଭେକ ବସିଥିଲେ ମୁଦ୍ଧା ସେ ତାହାର ଗୁଣ ଜାଣିପାରେନାହିଁ; ଚନ୍ଦ୍ର ଉଦିତ ହେଲେ ଚନ୍ଦ୍ରମଣି ଦ୍ରବେ, ମାତ୍ର ଅକର୍ମଶିଳାରୁ କେବେ ନୀର ସ୍ରବେ କି ? ପଦ୍ମ-

ତୋଳା ଗୀତ ଯେତେ କୋମଳସ୍ୱରରେ ଗାଇଲେ ମଧ୍ୟ ମାଟି-ମାର୍ଜାର-ଫଣି-ଫଣା ନୃତ୍ୟ କରେ କି ?

ଯେତେବେଳେ ସର୍ବମାର୍ଗକୁଶଳ ଭକ୍ତ ତାହାଙ୍କୁ ଦୃଷ୍ଟିର ଦ୍ରଷ୍ଟବ୍ୟ ଓ ତାହାଙ୍କ ବିଷୟକୁ ଶ୍ରୁତିର ଶ୍ରୋତବ୍ୟ କରେ, ସେତେବେଳେ ତାହାଠାରେ ଭଗବାନଙ୍କର କି ସୁଖ ଜାତ ହେଉନଥିବ ! ଯେତେବେଳେ ଭକ୍ତ ଭଗବାନଙ୍କୁ ସମ୍ମୁଖରେ ଦେଖି ନ ଦେଖିଲାପରି ହୋଇ ଅଭିମାନରେ କୋଣିଆଇଁ ଗୃହୁଁଥିବ ଓ ଅଳ୍ପ ଗେଲ୍ଲଇ ବନ୍ଦବାଣୀ କହୁଥିବ, ଏବଂ ଭଗବାନ ତାହା ନେତ୍ରରେ ଦେଖୁଥିବେ ଓ କର୍ଣ୍ଣରେ ଶୁଣୁଥିବେ, ତେତେବେଳେ ତାଙ୍କର କି ସ୍ୱର୍ଗସୁଖ ଜାତ ହେଉନଥିବ ! ଯେତେବେଳେ ଭକ୍ତ ଅତ୍ୟନ୍ତ ଉଦ୍ଧତ ଓ ଅତ୍ୟନ୍ତ ଲଜ୍ଜାବନ୍ତ ନ ହୋଇ ସ୍ନେହଗର୍ଭ ବାଣୀ କହୁଥିବ, ସେ ସମୟରେ ଭଗବାନଙ୍କର କି ଇନ୍ଦ୍ରସୁଖ ହେଉନଥିବ !

## ଅଷ୍ଟମ ପରିଚ୍ଛେଦ ।



ଯେତେବେଳେ ଭକ୍ତ କଳହଂସଗତିରେ ହଂସପ୍ରାୟ ଗମନ କରି ପୂଜାବନ୍ଦନା କାଳରେ ହଂସକ-ନିସ୍ୱନ ପ୍ରାୟ ଘଣ୍ଟାଘଣ୍ଟି ବାଦନ କରୁଥାଏ ଏବଂ ଭକ୍ତିରେ ଅସ୍ଥିତାଭାବ ଭୁଲି ଉଦାସୀନ ଭାବରେ ଇତସ୍ତତଃ କଟାକ୍ଷପାତ କରି ଦୂରରୁ ସୁଧାବୃଷ୍ଟି-ଦୃଷ୍ଟି ନିକ୍ଷେପ କରୁଥାଏ, ପୁଣି ମାୟାବରଣ ଖସାଇ ହୃଦୟର ଲୀଳା ପ୍ରଦର୍ଶନପୂର୍ବକ କରି ତୋଳି ପ୍ରାର୍ଥନା କରୁଁ କରୁଁ ଗଦଗଦ ହେଉଥାଏ, ସେତେବେଳେ ଭକ୍ତ ନିଶ୍ଚୟ ଭଗବାନଙ୍କର କାମକଳ୍ପଦ୍ରୁମ । ଯେତେବେଳେ ଭକ୍ତ ଭାବରେ ତନ୍ମୟ ହୋଇ ଉଦାସୀନ ଭାବରେ ଅନାଏ, କେବେ ବା ଚକ୍ଷୁନିମୀଳନ କରେ, ସେତେବେଳେ ଭଗବାନ ଭୂତ ଲାଗିଲା ପରି ବାଉଳା ହୁଅନ୍ତି । ନିଜର

ଅନୁଭବ କଥା ଭକ୍ତ କଥାରେ କିପରି କହିପାରିବ ? ଏ ସମସ୍ତ ଅନୁଭୂତିର ବିଷୟ, କହୁଥିଲେ ପଦ ଦେଢକେ ସୁଖର ଉଦୟ ହୁଏ; କିନ୍ତୁ ଗୁଆଁରମାନେ ଏକଥା ଶୁଣିବାକୁ ବିରକ୍ତ ହୁଅନ୍ତି । କୃଷ୍ଣ ଭଗବାନ ଏବଂ ଗୋପୀ ଭକ୍ତ ବିନା ଏ କଥାର ଅନୁଭବ-ଜାଣନ୍ତା ଆଉ କେହି ନାହିଁ । କହିବା, ଚହିଁବା, ମୋହିବା, ହସିବା, ରହିବା, ତୋଷିବାପାଇଁ ଭଗବାନ ଯେପରି ନିପୁଣ ଏବଂ ଭକ୍ତକୁ ସେ ଯେତେଭାବରେ ଛଳନ୍ତି, ତାହା କେହି କଳିପାରିବନାହିଁ ।

କୃଷ୍ଣ କୌଣସି ଏଣୀନୟନା ଗୋପୀର ସୁବେଣୀ ଦେଖି ଚତୁର-ଭାବରେ କହିଲେ,—"ତୁମ୍ଭେ ଏ ଜଟାଜୂଟ ଭକ୍ତି-ଗୁପତିକୁ ସ୍ନେହ ଦେଇ ରସାଣି ମୋର ମନପ୍ରାଣ ହରିବାପାଇଁ ଅମୋଘ ଅସ୍ତ୍ର ତିଆର କରିଅଛ, ତୁମ୍ଭଙ୍କୁ ବିଶ୍ୱାସ ନାହିଁ ।"

ତତ୍ପରେ ଅନ୍ୟ ଜଣକୁ ଶ୍ରୀହରି କହିଲେ,—"ଗୋ କୁନ୍ଦଦନ୍ତି, ତୁମ୍ଭେ ମୋର ପଞ୍ଚଭୂତ ପ୍ରାଣ, ପଞ୍ଚଭୂତଗଠିତ ଶରୀରରୁ ତୁମ୍ଭେ ଆତ୍ମାକୁ ପରିତ୍ରାଣ କରିଅଛ ଏବଂ ରିପୁମାନଙ୍କୁ ଦଳନ କରି ସେମାନଙ୍କର ବଧ ସାରିଅଛ । ଚକ୍ଷୁରେ ନଚାହିଁ ବଚନ ନ କହି ଧ୍ୟାନମଗ୍ନ ମୌନୀ ଯୋଗୀ ପରି ଢୁଳିଯାଉଅଛ । ମୋର ଆତ୍ମନିବେଦନ କଣ କାଲ-ଠାରେ ଗୀତ ବା ଅନ୍ଧଠାରେ ନାଟ ତୁଲ୍ୟ ବିଫଳ ହେବ ?" ଏହା ଶୁଣି ମୌନୀ ଭକ୍ତ ଈଷତ୍ ଦୃଷ୍ଟିପାତ କରି ଭଗବାନଙ୍କର ସ୍ନେହ ଆକର୍ଷଣକଲା ।

ତଦନନ୍ତର କେତକୀ-କାନ୍ତିମତୀ ଆଉ ଜଣେ ଗୋପାଙ୍ଗନାକୁ ଗୋପ-ନନ୍ଦନ କହିଲେ,—"ତୁମ୍ଭେ ସୁଦୁଷ୍କର ତପସ୍ୟା ଦ୍ୱାରା ଭସ୍ମବିଲେପିତ ଅଙ୍ଗରେ ଯେଉଁ ପ୍ରଭାବ ଲାଭକରିଅଛ, ସେଥିରେ ମୁଁ ମୁଗ୍ଧ; ଏବେ ମୋର ସ୍ୱରୂପ ଦର୍ଶନ କର, ଏବଂ ମୋର ମହିମା-ମାଧୁରୀ ଉପଭୋଗ କର । ଏ ପ୍ରଭାବ ଆଉ ରଖିବାର ଆବଶ୍ୟକ ହେବନାହିଁ ।" ଏ କଥା ଶୁଣି ଗୋପୀ ଉତ୍ତର ଦେଲା,—"ହେ କୃଷ୍ଣ, ଗଣେଶ ଚତୁର୍ଥୀ ତିଥିରେ

ଚନ୍ଦ୍ରମା ଦର୍ଶନ କଲେ, ଯେପରି ପ୍ରମାଦ ଘଟିବାର ପ୍ରବାଦ ଅଛି, ଆପଣଙ୍କୁ ଦର୍ଶନ କଲେ ସୁଖ ତ ଦୁର୍ଲଭ, ଦୁଃଖଲାଭହିଁ ସାର ହୁଏ । କାଳକ୍ଷିପ୍ତ ହୋଇ ଅପବାଦ ହୁଏ ! ଅକାଳ ଫଳ ଦେଖିଲା ପରି ଆପଣଙ୍କ ଦର୍ଶନରେ ଅପାର୍ଥିବ ପ୍ରେମ ହୃଦୟରେ ଉତ୍ପାତ ଘଟାଇ କାହାର ଭଲ ରଖେନାହିଁ ।

କୌଣସି ଲଜ୍ଜାବତୀ ହେମାଙ୍ଗୀ ଶରୀରକୁ ଝୀନ ବସନରେ ଆଚ୍ଛାଦନ କରି ଚାଲିଯାଉଥିବାର ଦେଖି ସର୍ବଜ୍ଞ ସର୍ବବ୍ୟାପୀ ଶ୍ରୀହରି କହିଲେ,—"ତୁମ୍ଭେ କିଛି ନକହି ହୃଦୟ ଲୁଚାଇ ଚାଲିଗଲେ କି ମୁଁ ତୁମ୍ଭର ଅନ୍ତରତମ ଦେଶ ଦେଖିନାହିଁ ? କାଚଘଟରେ ଜଳ ଯେପରି ଢଳ ଢଳ ହୋଇ ପ୍ରତି ଚକ୍ଷୁରେ ଦେଖାଯାଏ, ସେହିପରି ତୁମ୍ଭର ଚମ୍ପାଫୁଲ ପରି ନିର୍ମଳ ହୃଦୟ ଆନନ୍ଦରେ ନୃତ୍ୟ କରୁଥିବାର ମୁଁ ଦେଖିପାରୁଛି । ଲୋକରେ ଯାହା ପ୍ରଚ୍ଛନ୍ନ, ମୋ ଠାରେ ତାହା ପ୍ରକଟ ହୁଏ । କାନନାନ୍ତରସ୍ଥ କୁସୁମକୁ କେହି ନ ଦେଖିଲେହେଁ ତାହା ସୁବାସିତ ଓ ମନୋରମ ହୋଇ ଭ୍ରମରକୁ ଆକର୍ଷଣ କରେ । ଅଭିମାନୀ ଭକ୍ତର ଅଭିମାନ ମୋର ଅଧିକତର ସୁଖ ଆନୟନ କରେ ।"

ପୁଣି କାହାକୁ ଭକ୍ତବନ୍ଧୁ କହିଲେ,—"ତୁମ୍ଭର ଭକ୍ତି ରସାମୃତ ପାନ କରି ମୁଁ ଅଧିକ ପିପାସିତ ହୋଇଅଛି ।" ଅନ୍ୟ ଜଣକୁ କହିଲେ,—"ତୁମ୍ଭର ନିଷ୍କାମ କର୍ମ-ସମ୍ପାଦନରେ ତୁମ୍ଭଠାରେ ବନ୍ଧନପ୍ରାପ୍ତ ହୋଇ ମୁଁ ତୁମ୍ଭର ଭକ୍ତିରେ ବିସ୍ମିତ ହୋଇଅଛି ।"

କାହାର କାନ୍ତିକୁ ପ୍ରଶଂସା କରି ମୋହନ କହିଲେ;—"ଅଙ୍ଗ-କନକଲ-ତାରେ ମୁଖ-ପଦ୍ମରେ ନୟନ ଦୁଇଟି ଇନ୍ଦୀବର ସମ ବିରାଜୁଛି । ଦନ୍ତ-କୁନ୍ଦକଳି ସଙ୍ଗରେ ଅଧର-ବନ୍ଧୁଲୀ ଫୁଟିଅଛି । ବିଧାତାଙ୍କର ଏ ଲତା-ସୃଷ୍ଟି ଚୟକୁ ବଳ ଦେଉଅଛି । ଏ ବିଚିତ୍ର ଲତା ସୁସ୍ୱାଦ-ସୁଫଳ ଜନ୍ମ କରି କୃତାର୍ଥ ହେଉ ।"

ଅନ୍ୟ ଜଣଙ୍କୁ ଶ୍ରୀଧର କହିଲେ,—"ନିତମ୍ବଚନ୍ଦ୍ରାଶ୍ରେଷ୍ଠ-କଳେବର-ରଥରେ ସଦ୍‌ଗୁଣ ନିଚୟ ଆରୋହଣ କରି 'ଯାହାର ଯେମନ୍ତ ରୂପ ତାହାର ତେମନ୍ତ ଗୁଣ' ଏ ଉକ୍ତିର ସତ୍ୟତା ପ୍ରତିପାଦନ କରୁଅଛି; ଏହାର ଅଭ୍ୟନ୍ତରସ୍ଥ ହୃଦାସନରେ ବସିବା ପାଇଁ ମୋର ଶ୍ରଦ୍ଧା ବଳୁଅଛି, ମାତ୍ର ଲୋଭୀ କୃପଣଙ୍କୁ ଆଶା କରି ଯେପରି ବାଧା ପାଏ, ବା ସ୍ୱାଧୀନ-ଭର୍ତ୍ତୃକା ସ୍ତ୍ରୀ ଗୁଣାସକ୍ତ ସ୍ୱାମୀ ପ୍ରତି ଯେପରି ବ୍ୟବହାର କରେ, ତୁମ୍ଭେ ସେହିପରି ମୋ ପ୍ରତି ପ୍ରସନ୍ନ ହେଉନାହିଁ।" କୁନ୍ଦ-ଇନ୍ଦୁ-କାଶ-କର୍ପୂର-ପ୍ରକାଶ ସମ ମନ୍ଦହାସ କରି ଗୋପୀ ଉତ୍ତର କଲା,—"ହେ କୃଷ୍ଣ! କୁସୁମଠାରେ ଭ୍ରମରର ପ୍ରୀତି କ୍ଷଣକାଳସ୍ଥାୟୀ; ଭକ୍ତ ସମକ୍ଷରେ ଭଗବାନଙ୍କ ଆବର୍ଜ୍ଜିତ-ସ୍ଥିତ କଳାମେଘ-କୋଳରେ ବିଦ୍ୟୁତ୍ ତୁଲ୍ୟ ଚଞ୍ଚଳ; ସୁତରାଂ କ୍ଷଣିକ ସୁଖରେ କାହାର ଆସ୍ଥା ହୁଏ କି?"

କେଉଁ ଗୋପୀମୂର୍ତ୍ତିକୁ ଅନାଇ ଶୋଭାମୂର୍ତ୍ତି ପୁରୁଷୋତ୍ତମ ବୋଇଲେ —ତୁମ୍ଭର ରୂପ-ସରୋବର ପରମ ସୁନ୍ଦର; ଏଥିରେ କାନ୍ତି ସ୍ୱଚ୍ଛଜଳ, କେଶ ଶୈବାଳ, ବଦନ କମଳ, ନୟନଯୁଗଳ ଶଫରୀ, ଓ ନଖ କହ୍ଲାରକ ସମ ଶୋଭା ପାଉଛି। ହୃଦୟର ଉଚ୍ଚ ଗୁଣମାନ ରୂପ ଅନ୍ତରାଳରେ ପ୍ରଚ୍ଛନ୍ନ ରହି ମୋର ନେତ୍ରାନନ୍ଦକର ହୋଇଅଛି।"

ଆଉ ଜଣଙ୍କୁ କହିଲେ,—"ଭବ-ତରଙ୍ଗିଣୀରେ ଜୀବନ-ତରଣୀ ବହିଯିବାର ଦେଖି ନିଜେ କର୍ଣ୍ଣଧାର ହୋଇ ଭକ୍ତି-ଉଡୁପରେ ତରଣୀକୁ ତୁମ୍ଭେ ପାର କରୁଛ।"

ଜଣେ ନବୀନଭକ୍ତ ବ୍ରଜବାଳିକାକୁ ସ୍ୱବଗ୍ରାହୀ କହିଲେ,—"ତୁମ୍ଭର ଭକ୍ତି ଅବିମିଶ୍ର ଓ ନିର୍ମଳ, ମାତ୍ର ଦୁରନ୍ତ ରିପୁଜନ୍ୟ ସମ୍ପୂର୍ଣ୍ଣ ହୋଇ ନ ଥିବାରୁ ତୁମ୍ଭର ଭକ୍ତି କଣ୍ଟକଯୁକ୍ତ ପନସ ପରି ଉପରେ କର୍କଶ ଓ କଠିନ। ପଇଡ଼ ଉପରେ କର୍କଶ ଓ କଠିନ ବୋଲି ତାହା କାହାର ପ୍ରିୟ ନୁହେଁ? ତୁମ୍ଭର ଚିତ୍ତ ଆଦ୍ୟରେ କଠିନ ହେଲେହେଁ ପଛକୁ ଦ୍ରବୀଭୂତ ହୋଇଯିବ।"

ଅନ୍ୟ ଗୋପୀକୁ ଶ୍ରୀହରି କହିଲେ,—"ବସନ୍ତ କାଳରେ ତାହୁଙ୍କ ପରି ତୁମ୍ଭେ ସଂସାରର ଆନନ୍ଦ-ଆହ୍ଲାଦରେ ନିଶ୍ଚଳଚିତ୍ତ ହୋଇ ଭବ-ଭୟରୁ ମୁକ୍ତ ହୋଇଅଛ । ମୋତେ ଦେଖି ନ ଦେଖିଲା ପରି ହୋଇ ଓ ମୋ କଥା ଶୁଣି ନ ଶୁଣିଲା ପରି ହୋଇ ମୋର ଅବ୍ୟର୍ଥ ଅଦ୍ୱୈତ-ଭାବକୁ ବ୍ୟର୍ଥ କରିବ କି ? ମୋର କଳାରୂପ ଦେଖି ଅବା ମୋ କଥାରେ ଆଦର ହେଉନାହିଁ ! ଏହାହିଁ ଯଦି ସତ୍ୟ ବୋଲି ଭାବୁଥାଅ, ତେବେ କୁଟିଳକୁନ୍ତଳ, ଯୁଗଳ ଭ୍ରୂଲତା ଓ କଳାମେଘୀ ଅମ୍ବର କନକ-କେତକୀ ଅଙ୍ଗରେ ଆଡ଼ମ୍ବର ହୁଏନାହିଁ କି ? କଜ୍ଜଳକସ୍ତୂରୀଠାରୁ ମୋର ଅଙ୍ଗ ଏଡ଼େ ଅସାର ହେଲା କି ? କଳାକୁ ହେଳା କରିବନାହିଁ । କଳେ କଳାବତୀ ହୋଇ କଳାବନ୍ତର କଥାକୁ ଆଦର କରିବାରେ ମନ ବଳାଇବା ଅବଶ୍ୟ କର୍ତ୍ତବ୍ୟ ।"

ଜଣେ ଗୋପୀକୁ ସଦୟ ଭାବରେ ଶ୍ରୀହରି କହିଲେ,—"ଶ୍ରଦ୍ଧାବତୀ ହୋଇ ତୁମ୍ଭେ ଦୃଢ଼ରୂପେ ବିଶ୍ୱାସକୁ ଧର ଏବଂ ପୂର୍ବଭକ୍ତମାନଙ୍କର ଶିକ୍ଷାମାନ ତନ୍ନତନ୍ନ ଭାବରେ ଅନୁଭବ କରି ହୃଦୟରୁ ସମସ୍ତ ପ୍ରକାର ଖେଦ ଦୂରକର । ସାନୁରାଗ ଭକ୍ତି କଦାପି ହୃଦୟରୁ ଊଣା କରିବନାହିଁ; ଏତିକି ମନେ ରଖିବ । "

କୃଷ୍ଣ ଓ ଗୋପୀ ଏହିପରି କୌତୁକରେ ଦିନ କାଟିଲେ । ସେମାନଙ୍କର ସ୍ନେହ ଉତ୍ତର-ପ୍ରତ୍ୟୁତ୍ତର ଜଳଧର-ବୃଷ୍ଟି ବା ନଭନକ୍ଷତ୍ରପରି ଅଗଣନ । ସେଥିରୁ କେତୋଟି ମାତ୍ର କଥା ନେଇ ମନୋହର ଗୀତ ରଚନା କରି କବିମାନେ ଭକ୍ତହୃଦୁରୁ ତରିଯାନ୍ତି । ପୁଷ୍ପବନ୍ତ ସୂର୍ଯ୍ୟଚନ୍ଦ୍ର କମଳ-କୁମୁଦ-ବନକୁ ଯେପରି ପ୍ରମୋଦ ଦିଅନ୍ତି, କୈବଲ୍ୟଦାୟକ ବନ୍ଧୁଭକ୍ତ-ନାୟକ ଶ୍ରୀକୃଷ୍ଣ ଗୋପୀ ଭକ୍ତମାନଙ୍କୁ ସେହିପରି ଆନନ୍ଦ ଦେଲେ ।



# ନବମ ପରିଚ୍ଛେଦ ।



କୁଞ୍ଜବିହାରୀ ଏହିରୂପେ ଗୋପନଗରରେ ବିହାର କରୁଁ କରୁଁ କମଳ-ଶତଭାର ଦେବାପାଇଁ କଂସ-ଆଜ୍ଞା ନନ୍ଦଙ୍କୁ ଆସି ଲାଗିଲା । ନନ୍ଦ ଚିନ୍ତା କଲେ ଏବଂ କିଏ କମଳ ତୋଳିବାକୁ ଯିବ ଭାବି ଉଦ୍‌ବିଗ୍ନ ହେଲେ । କିନ୍ତୁ କଂସର ନିଷ୍ଠୁର ଆଦେଶ ଶୁଣି ଚିନ୍ତା ପରିହାରପୂର୍ବକ ବନମାଳୀ ଆଗଭର ହେଲେ । କାଳୀଭୟରେ କାଳିନ୍ଦୀରେ କେହି ପଶୁନଥିଲେ; ମାତ୍ର ନଟ ଯେପରି ନଟମନ୍ଦିରରେ ପ୍ରବେଶକରେ, କୃଷ୍ଣ ସେହିପରି ମନଆନନ୍ଦରେ କାଳିନ୍ଦୀରେ ପ୍ରବେଶ କଲେ । କମଳନୟନ କମଳ-କରରେ କମଳୁଁ କମଳ ଗୋଟି ଗୋଟି କରି ତୋଳିବାକୁ ଲାଗିଲେ; ଇତିମଧ୍ୟରେ କୁଟିଳବୁଦ୍ଧି କାଳୀ-ଫଣୀ କମଳପାଦରେ ଦଂଶି ଅଙ୍ଗକୁ ଅଙ୍ଗକୁଣ୍ଡଳୀରେ ଛନ୍ଦି ସବଳେ ଭିଡ଼ିଲା ଏବଂ ମର୍କତସ୍ତମ୍ଭରେ ଇନ୍ଦୀବରମାଳପରି ସୁନ୍ଦର ଦିଶିଲା । ଦୁହିଙ୍କ ଅଙ୍ଗ କଜ୍ଜଳ ପର୍ବତରେ କଳାମେଘପରି ଶୋଭା ପାଇଲା । ଯାହା କର୍ଣ୍ଣରେ ଶୁଣିବାକୁ ଏତେ କୌତୁକପ୍ରଦ, ତାହା ନୟନରେ ଦେଖିଲେ ମନ କି ନହୁଅନ୍ତା ! କାଳୀର ଏ ଉଦ୍ଧତ କାର୍ଯ୍ୟ ଦେଖି ଶ୍ରୀରଙ୍ଗ ଐଶୀବଳରେ ତାହାର ଉତ୍ତମାଙ୍ଗରେ ଉଠି ନଟବରପ୍ରାୟ ଶ୍ରୀଅଙ୍ଗଭଙ୍ଗୀ କରି ତାଣ୍ଡବକଲେ; କାଳୀ ହତ ହେବା କାଳରେ ଉତ୍ପାତ-ଇନ୍ଦ୍ରଧନୁ ଜଳରେ ଉଦିତ ହେଲା କି ? କାଦମ୍ବିନୀ-କୋଳରେ କିମ୍ବା ନବତମାଳ-ଦଳରେ କେକୀ ମଉଖେଳରେ ନାଚିଲା କି ? ବନମାଳୀ କାଳୀଉପରେ ତଳି ତଳି ନର୍ତ୍ତନ କଲାବେଳେ ଗୋପାଳ ପୁଏ ମିଳି କାଳିନ୍ଦୀକୁ ଗୋଳାଇ ପକାଇଲେ; ସହସାହସ ଶିଶୁହୃଦୟରେ ମଧ୍ୟ ଖରଖବର ଉନ୍ମାଦ ଘଟାଏ ।

ଏ ସମ୍ବାଦ ପାଇ କେଉଁ ଗୋପବାଳୀ ପ୍ରିୟ ଆଳୀକି ଡାକି କହିଲା,—"କାଳିନ୍ଦୀରେ ପଦ୍ମଫୁଲ ତୋଳୁ ତୋଳୁ ଶ୍ରୀକୃଷ୍ଣ ପଶି କାଳୀକୁ ଦଳିଦେଲେ; ଆସ ବନମାଳୀଙ୍କି ସନ୍ଧୋଳି ଯିବା," "ସେ କୁଶଳରେ ଲେଉଟି ଆସନ୍ତୁ" କହି ଆର୍ତ୍ତରେ ଧର୍ମକୁ ଓଳଗି ହୋଇ କମଳା, ବିମଳା,

ପରିମଳା ଆଦି ସର୍ବଆଳୀଙ୍କି ସୁବର୍ଣ୍ଣଆଳୀକି ବେଗେ ସଜାଡ଼ି କାଳୀୟ-ଗଞ୍ଜନଙ୍କୁ ଆରତି ବନ୍ଦାପନା କରିବାପାଇଁ ସେ ପରାମର୍ଶ ଦେଲେ । କେଉଁ ଗୋପୀ ପରିହାସ କରି କହିଉଠିଲେ--"ଚନ୍ଦ୍ରାବଳୀକି କହ, ସେ ଝଟ କନକ--କୁସୁମ-ବେଲପତ୍ରୀ-ମାଳ ଶୂଳୀଙ୍କି ମାନନ୍ତୁ ।" କେହି ଟୁହି ହୋଇ କୋଇଲେ,—"ଆମ୍ଭଙ୍କୁ ଜଳକେଳି କରିବା ପାଇଁ ଆଜିଠାରୁ ଭଲ ହେଲା; କୃଷ୍ଣପାଦପଦ୍ମଧୂଳି ଆମ୍ଭ ସବୁରି ମୌଳିରେ ଲାଗିଥାଉ ।" ଆଉ ଜଣେ ପ୍ରତିବାଦ କଲା,—"ଏହାଙ୍କୁ କଣ ତୁଳନା କହନ୍ତି ? ତାଙ୍କୁ ପୂଜାକରିବା ପାଇ ଦେବତାମାନେ ଯଥା କୁସୁମ-ଅଞ୍ଜଳି ଦେବନ ଛୁଡ଼ା ହୋଇଥାନ୍ତି ।" କେହି କହିଲେ,—"ସେ କାଳୀ-ମସ୍ତକଉପରେ କରି ତୋଳି କି ସୁନ୍ଦର ନାଚୁଛନ୍ତି ! ଜୀବନ-ମନ-ନେତ୍ର ନଉଗ୍ରଲିକି ସେହି ଜଣକ ହିଁ ମାତ୍ର; ତାହାଙ୍କୁ ବିନିକି କେହି ଅଛି କି ? କରାଳ କରାଳ ମହାଦାବାନଳ ଅନ୍ୟ କେହି ଗିଳିପାରେ କି ? ଗୋବର୍ଦ୍ଧନ ପର୍ବତ ଅନ୍ୟ କେହି ତୋଳି ପାରେ କି ?" ଅନ୍ୟଜଣେ କହିଲା, "ଦେଖିବ, କାଳଦନ୍ତ ଘାତ ପାଦଅଙ୍ଗୁଳିକି କପରି ବାଧିଥିବ ।" ଆଉ ଜଣେ କୋଇଲା,="କଷ୍ଟ ବିସ୍ମରନାହିଁ; ଆମ୍ଭର ଚନ୍ଦ୍ରମୌଳି ନାହାନ୍ତି କି ?" ଜଣେ ଗୋପୀ କାତର ହୋଇ କହିଲା, -"ବିଧି ମୋର ମର୍କତମାଳିକୁ କଣ କରୁନଥିଲା ! ମୋତେ ଅନ୍ଧ କରି ମୋର ନେତ୍ର-ପୁତଳିକି କାଢ଼ିନେଉଥିଲା; କାଳୀଙ୍କି ସେବିଥାଇଁ ବୋଲି ହିନା ସେ କୃପାକରି ଆମ୍ଭର ସୁଖସଙ୍ଗାଳିକି ରଖିଛନ୍ତି । ତାଙ୍କୁ ନ ଦେଖିବାଯାଏ ମନରେ ପ୍ରତ୍ୟୟ ନାହିଁ ।" ଏହା ଶୁଣି ଅପର ଏକ ସହଚରୀ ସାନ୍ତ୍ୱନା ଦେଇ କହିଲା,—"ତାଙ୍କଠାରେ ଏହି ସ୍ଥିର କଥାପାଇଁ ଭାଳୁଛ କାହିଁକି ? ଏ ବା କେଉଁ କଥା; କେତେ କେତେ ବିଥାମାନ ଗଲାଣି, କଅଁଳା ପୁଅବିନରୁ ଆମ୍ଭ କାହ୍ନୁ କେଉଁ ବିଚିତ୍ର କୃତ୍ୟ ନକଲେଣି ! ଅଜ୍ଞ ଲୋକମାନେ ପୁରାଣ ଗୀତ କଣ୍ଠରେ ଶୁଣି ଯେପରି ବିଶ୍ୱାସ କରିପାରନ୍ତିନାହିଁ, ତୁମ୍ଭେମାନେ କେଶବ-ଚରିତକୁ ପ୍ରତ୍ୟକ୍ଷ କରି ମଧ୍ୟ ସେହିପରି ବିଶ୍ୱାସ କରିପାରୁନାହିଁ । ସମସ୍ତେ ଶୁଣ, ବ୍ରଜବନ୍ଧୁ 'କାଳୀୟ-ମର୍ଦ୍ଦନ' ନାମ ଧରି ଶୀଘ୍ର ଏଠାରେ ପ୍ରବେଶ କରିବେ ।"

ତତ୍ପରେ କାଳୀୟ-ରମଣୀର ସ୍ତୁତି-ବାଣୀ ଶୁଣି କରୁଣାସିନ୍ଧୁ କରୁଣାରେ କାଳୀୟକୁ ଅଭୟ ଦେଇ ବିଳମ୍ବ ନହେଉଣୁ ଗୋପରେ ବିଜୟ କଲେ । ନନ୍ଦରାୟ ଆନନ୍ଦପୂର୍ଣ୍ଣ ହୃଦୟରେ ଅନେକ ଦାନପୁଣ୍ୟ କଲେ ଏବଂ ଶତଶର କମଳ କଂସ ସମୀପକୁ ପ୍ରେରଣ କରି ତାହାର କୁଟ ଯାଞ୍ଚ ପଣ୍ଡ କଲେ ।

କାଳିନ୍ଦୀ ସେହି ଦିନଠାରୁ 'ମହାବିଷଜ୍ୱାଳାରୁ ମୁକ୍ତ ହେଲା । ହଂସ, ବକ, କାରଣ୍ଡକ, କୋକ ଓ ହଂସଗଳ ତହିଁରେ ସତତ କ୍ରୀଡ଼ା କଲେ । ଜଳରେ କଞ୍ଜ, କୁମୁଦ ଓ କୁବଳୟ ପ୍ରସ୍ଫୁଟିତ ହେଲା । କାଳିନ୍ଦୀ କମଳା-ବିଳାସସ୍ଥଳ ହୋଇ ନୟନ-ମନ ତୋଷ କଲା । ତଟନିକଟ ବୃନ୍ଦାବନ ଶୋଭା-ସଙ୍ଗୀତ-ମନ୍ଦିର ହେଲା । ମୃଦୁମନ୍ଦ ସମୀରରେ କମ୍ପିତ ହୋଇ କୁସୁମିତ ଲତା-ନର୍ତ୍ତକୀ ନର୍ତ୍ତନ କଲା । କଳକଣ୍ଠ କୋକିଳ ପଞ୍ଚମତାନରେ ଗୀତଲହରୀ ଉଠାଇଲା ଏବଂ ନୀଳକଣ୍ଠ ମୟୂର ମର୍ଦ୍ଦଳରବ କଲା ।

କୁଟିଳକୁନ୍ତଳା ଭକ୍ତକୁଶଳା କମଳବଦନା କରୀନ୍ଦ୍ରଗମନା କୁନ୍ଦ-କଳିତରଦନା କମ୍ବୁକଣ୍ଠୀ ବନ୍ଧୁଲୀଦଶନା କେଶରୀମଧ୍ୟମା କୌଷେୟ-ଝୀନବସନା କୁରଙ୍ଗଲୋଚନା କୋକିଳବଚନା କୁଟିଳକଟାକ୍ଷା କୁଞ୍ଜ-ବିହାରି-ହୃଦୟହାରିଣୀ ଗୋପିକା କାଳିନ୍ଦୀରେ ସ୍ନାନ କରିବାକୁ ମନ କରି ଉତ୍ସୁକ ହେଲେ ଏବଂ କୁଙ୍କୁମ ଅସ୍ୟଁକା ପ୍ରଭୃତି ଗନ୍ଧଦ୍ରବ୍ୟ ଘେନି ରାଧିକା ପାଶରେ ଉପସ୍ଥିତ ହୋଇ ସ୍ନେହଭରେ କହିଲେ, "ଆସ ଯମୁନାକୁ ଅବଗାହନ କରିବାକୁ ଯିବା ।" ଶ୍ରୀ ରାଧା ହସି ହସି ଉତ୍ତର-କଲେ —" ବାସ୍ତବିକ ମୋର କୃଷ୍ଣବର୍ଣ୍ଣ ଜଳରେ ଅତି ଶ୍ରଦ୍ଧା; କାଳୀୟ-ମର୍ଦ୍ଦନ-ଦିବସରୁ ଯମୁନା ଦେଖିଯିବାକୁ ନିତ ମନ କରୁଥାଏଁ; କିନ୍ତୁ କାହାର ସଙ୍ଗ ପାଏନାହିଁ; ତହିଁରେ ପୁଣି କାଳେ ବାଟରେ ଶ୍ରୀରଙ୍ଗ-ଭେଟରେ ପଡିଯିବ " । ଅନ୍ୟାନ୍ୟ ଗୋପୀମାନେ କହିଲେ,—" ଆମ୍ଭର ମଧ୍ୟ ସେହି ଭୟ; ଆଜିକାଲି ବାଟଘାଟରେ ଚାଲିବାକୁ ଭୟ ଲାଗିଲାଣି; ହଟିଆ କେତେବେଳେ ଆସି କି ହଟ ଲଟ ଲଗାଇବେ, କିଏ ଜାଣେ ?"

ଜଣେ କହିଲା,-"ଚାଲ ଗୋ, ଶୋପରେ ଗୋଳ କରିଦେଇ ଗାଧୋଇ-ଯିବା; ସେ ଆସନ୍ତୁ, କେତେ ରଙ୍ଗ କୌତୁକ ଜାଣନ୍ତି ଦେଖିବା; ଏପରି ସବୁଦିନେ ଶଙ୍କା କରୁଥିଲେ, ଶଙ୍କା ହିଁ ଦିନକୁଦିନ ବଢୁଥିବ ।" ଏ କଥା ଶୁଣି ଆଉ ଜଣେ କହିଲା,—"ନା, ନା, ଏ ବଡ଼ର ଗୁଡ଼; କଣ୍ଟି ଇକ୍ଷୁରସ ପାଇଲେ ଯେପରି ନିତ ଇକ୍ଷୁକ୍ଷେତ୍ରକୁ ଗମନ କରେ, ନିକ ଆମ୍ଭମାନଙ୍କର ଦଶା ସେହିପରି ହେବ ।"

ଏହିରୂପେ ନାନା ପ୍ରକାର କୌତୁକ କଥାମାନ କହି ଗୋପ-ବନିତାମାନେ ଭକ୍ତିରେ ତନ୍ମୟ ହୋଇ କୃଷ୍ଣଠାରେ ମନବଚନ-କର୍ତ୍ତବ୍ୟ ଭକ୍ତିଭରେ ସମର୍ପଣ କରି ସ୍ନାନଯାତ୍ରା କଲେ ।



## ଦଶମ ପରିଚ୍ଛେଦ ।



ଶୋଭା-ଭକ୍ତି-ମୂର୍ତ୍ତିମତୀ କୁମୁଦନନ୍ଦିନୀ ଶ୍ରୀମତୀ ସଖୀଗଣ ଘେନି ଆନନ୍ଦରେ ଗମନ କଲେ । ଭୃଙ୍ଗମାନେ ତାଙ୍କର କମଳ-ସୁବାସ ଅଙ୍ଗର ଚତୁର୍ଦ୍ଦିଗରେ ଉଡ଼ି ବୁଲୁଛନ୍ତି । ମଦନମୋହନଙ୍କର ପ୍ରିୟତମା ଓ ସୁଖ-ସୀମା ବାମା ତ୍ରିଭୁବନରେ ସହଜରେ ନିରୁପମା; ତାଙ୍କର ପୁଣି କଣ ଉପମା ହୋଇପାରେ ? ମସ୍ତକରେ କଜ୍ଜ୍ୱଳକଳା ଶୈବାଳସୂକ୍ଷ୍ମ ତରଙ୍ଗକୁଟିଳ ଆକଟିଲମ୍ବି—କୁସୁମବାସ-କୁନ୍ତଳ ମହାମନୋରମ ହୋଇ-ଅଛି । କଞ୍ଜପରିମଳ ଦର୍ପଣନିର୍ମଳ ଚନ୍ଦ୍ରକାନ୍ତିମୁଖ, ଦେଖିଲେ ମହାସୁଖ ଜାତ ହୁଏ । ସୁରଙ୍ଗଅଞ୍ଚଳ, କୁରଙ୍ଗ-ଚଞ୍ଚଳ ଶଫରୀ-ଆକୃତି ନୟନ, ଧନୁବକ୍ର ମୃଦୁସୂକ୍ଷ୍ମନୀଳ ଭ୍ରୂଲତା, ଏ ଗୁଡ଼ିକ ଆଖିରେ ଦେଖିଲେ ହୃଦୟରେ ଲଗି ରହେ । କମନୀୟ ତିଳପୁଷ୍ପମଞ୍ଜୁଳ ଅତୁଲ୍ୟ ଅମୂଲ୍ୟ ନାସା,

କୁନ୍ଦୋଜ୍ଜ୍ୱଳ ମୋତିବର୍ତ୍ତୁଳ ଡାଳିମ୍ବଜ୍ୟୋତି ହୀରସାର କୁନ୍ଦ ବସାଇଲା-ପ୍ରାୟ ସଞ୍ଚଘଞ୍ଚ ଦନ୍ତପନ୍ତି, କିଶଳୟ-ବିମ୍ବ-ବନ୍ଧୁକ-ବିଡ଼ମ୍ବୀ ଅଧର, ଶିରୀଷ-କୋମଳ କେତକୀଗୋରବଭୋଗ୍ୟ ଦେହକାନ୍ତି, ଏମାନଙ୍କର ପଟାନ୍ତର କାହିଁ ? କୋମଳ ବଚନ ବାଣୀ କୋକିଳ-ପଞ୍ଚମଠୁଁ ସୁସ୍ୱର, ବୀଣା-ନିକ୍ୱଣରୁ ମଧୁର, ଓ ପଢ଼ାସାରି-କଥା ଜିଣି ସୁଖକର। ଶଙ୍ଖୁକମ୍ବୁକଣ୍ଠ, ମୃଣାଳ-ସରଳ ଭୁଜ, ଶତପତ୍ରନିନ୍ଦ-କରପତ୍ର, କାଳବର୍ଣ୍ଣାବଳୀ ଚଳ-ରୋମାବଳୀ, ଡ଼ମ୍ବରୁ-ସରୁ ଓ ପୁଲିନସୂକ୍ଷ୍ମ ମଧ୍ୟ, ଏବଂ କନକ-କଦଳୀସମ ଜାନୁ ସଂସାରରେ କବିଚକ୍ଷୁରେ ଅତୁଳନୀୟ, କମଳ ଅରୁଣ କୋମଳ ଚରଣ, ମଣିପ୍ରଭ ନଖରାଜି ଓ ସଲକ୍ଷ ଗଜଗତି ସକଳ ଉପମାକୁ ନିନ୍ଦାକରି ସୌନ୍ଦର୍ଯ୍ୟସୀମା ନିର୍ଦ୍ଦେଶ କରୁଅଛି ।

ଅପ୍ରତିଶୋଭାଙ୍ଗୀ ଶ୍ରୀରାଧା ଅନବଦ୍ୟାଙ୍ଗୀ ସଖୀ ସମଭିବ୍ୟାହାରେ କାଳିନ୍ଦୀକୂଳରେ ଉପସ୍ଥିତ ହେଲେ, ବନିତାମାନଙ୍କର କଳେବର-ମାନ କନକଲତାପରି ଶୋଭିତ ହୋଇଅଛି । ଯମୁନାଜଳ କଜ୍ଜଳ-ପ୍ରାୟ ନେତ୍ରସୁନ୍ଦର ହୋଇଅଛି; ମନେ ହେଉଛି, କୁଳବତୀକୁଳକୁ ଉଜ୍ଜ୍ୱଳ କରିଛି ପରା ! କାଳିନ୍ଦୀ କୃଷ୍ଣପ୍ରିୟ ଲୋକର ହୃଦୟପରି ମହାନିର୍ମଳ ଏବଂ କର୍ପୂର-ଚନ୍ଦନ-ଚନ୍ଦ୍ରମା ସମ ସନ୍ତାପହର ଓ ସୁଶୀତଳ; ପୁଣି କୃଷ୍ଣହୃଦସ୍ଥଳପରି କମଳମାଳମଣ୍ଡିତ ହୋଇ ଚକ୍ରାବର୍ତ୍ତରେ ବନ୍ଦଗତ କରି ମୁମୁକ୍ଷୁ ମର ନରଉପରେ ଶାନ୍ତି-ସଲିଳ ସେଚନପୂର୍ବକ ତାହାକୁ ମୁକ୍ତି ଓ ଅମୃତତ୍ୱ ଦାନ କରୁଅଛି । କୁସୁମବେଷ୍ଟିନୀ ନାଗରୀ ଜଳସନ୍ଧ ଦେଇ ଓ ବାସ ବିତରଣ କରି ପଥିକର ପିପାସା ଓ ଶ୍ରାନ୍ତି ଦୂର କରୁଅଛି । ସୁର-ସରିତରେ ଚନ୍ଦ୍ରସୂର୍ଯ୍ୟ ଗତାଗତ ହେଲା ପ୍ରାୟ କାଳିନ୍ଦୀରେ ଉଡୁପ ଓ ତରଣୀ ଗମନାଗମନ କରୁଅଛି । ଏହାର ଦୁଇ ତଟ ଓ ମଧ୍ୟସ୍ଥ ଜଳ ଦୁଇ ଧନ ଓ ମଧ୍ୟସ୍ଥ ରାଜିପରି ପ୍ରତୀତ ହେଉଅଛି । ପ୍ରିୟଜନ-ବିରହରେ ଲୋକ ମଳିନ ହେଲା ପ୍ରାୟ ଏହା ମଳିନ ଥିଲା; ଏବେ କୃଷ୍ଣ-ଅଙ୍ଗସଙ୍ଗଲାଗି ଏତେ ନିର୍ମଳ ହୋଇଅଛି । କୃଷ୍ଣ-ଆଗମନ-ଆଶାରେ କାଳିନ୍ଦୀ ପଦ୍ମମୁଖ ପ୍ରସନ୍ନ କରି ରହିଅଛି ।

ଗୋପକାମାନେ ଆନନ୍ଦିତ ଚିତ୍ତରେ ଜଳରେ ପ୍ରବେଶ କରି ଅବଗାହନ ଶେଷ କଲେ ଏବଂ କୃଷ୍ଣ ଉଦ୍ଦେଶ୍ୟରେ ଭକ୍ତିଭରେ ନମସ୍କାର କରି କୂଳକୁ ଉଠିଲେ । ତଦନନ୍ତର ଅଙ୍ଗ ପୋଛି ନିଜ ନିଜ ବସନ ପରିଧାନ କଲେ ଏବଂ ସ୍ନାନ ସମାପନାନ୍ତେ ହାସରସ-କୌତୁକରେ ନାନା-ପ୍ରକାର କଥୋପକଥନ କରି କରି ଗୋକୁଳ ଆଡ଼େ ଧୀରେ ଧୀରେ ଅଗ୍ରସର ହେଲେ । କଳହଂସପଙ୍କ୍ତି ମନ୍ତ୍ରମୁଗ୍ଧ ହୋଇ କଳସ୍ୱନ କରି ସ୍ଖଳୁଥିଲେ ପରି ! ଧନ୍ୟ ସେ ମାନବ-ଶରୀର-ଧାରିଣୀ ଗୋପା-ଙ୍ଗନାମାନଙ୍କର ତପ ! ସେମାନେ କୃଷ୍ଣକଥା କହି ନିରନ୍ତର କୃଷ୍ଣଭକ୍ତିରେ ମାତିଥାନ୍ତି ଏବଂ ଭକ୍ତି-ବଡ଼ିଶରେ କୃଷ୍ଣ-ମନ-ମୀନ ଆକର୍ଷୁଥାନ୍ତି । ଧନ୍ୟ ସେ ଭକ୍ତବୃନ୍ଦ, ଜୀବନ୍ତଶରୀରରେ ଭଗବାନଙ୍କୁ ଲାଭକରି ସେମାନେ ଅରିମାନଙ୍କରେ କେତେବେଳେ ଏ ହାତରେ ଫିଙ୍ଗି ସେ ହାତରେ ତାହାଙ୍କୁ ଧରୁଥାନ୍ତି ! ଗୃହରେ ପହଞ୍ଚି ଗୋପୀମାନେ ଯେତେବେଳେ ଦେଖିଲେ, ପୁରଦ୍ୱାର କମଳଚରଣ-ଚିହ୍ନରେ ଭୂଷିତ ହୋଇଅଛି ଏବଂ ପାଦ-ରେଣୁରେ ପୂତ ହୋଇଅଛି, ସେତେବେଳେ ସେମାନେ ବହାରେ ଚଳହୋଇ ଭିତରେ ନିରତିଶୟ ଆତ୍ମପ୍ରସାଦ ଲାଭକଲେ । ଯୁଗଯୁଗାନ୍ତର ଯୋଗ-ବାଟ ଜଗିଲେ ସୁଦ୍ଧା ଯୋଗୀଙ୍କୁ ଯେ ଦୁର୍ଲ୍ଲଭ, କି ଭାଗ୍ୟବଳରେ ଗୋପୀ ଗୋପା-ଳଙ୍କୁ ସେ ସଦାବେଳେ ସୁଲଭ । ବେଦପଢ଼-ସ୍ତୁତିରେ ଯେ ସହଜରେ ବଶ ହୁଅନ୍ତିନାହିଁ, ସେ ପୁଣି ବ୍ରଜାଙ୍ଗନାମାନଙ୍କର ଡାକକୁ କର୍ଣ୍ଣ ଡେରିଥାନ୍ତି ! ଧନ୍ୟ ଗୋପୀ, ଧନ୍ୟ ଗୋପାଳ ! ଧନ୍ୟ ଭକ୍ତ, ଧନ୍ୟ ଭଗବାନ !



## ଏକାଦଶ ପରିଚ୍ଛେଦ ।



ପୀତବାସ ଗୋପରେ କ୍ରୀଡ଼ା କରୁ କରୁ କ୍ରମେ ହେମନ୍ତ ଉପସ୍ଥିତ ହେଲା । ଦିନ ନ୍ୟୂନ ହେବାକୁ ଲାଗିଲା । କେଉଁ କେଉଁ ପଦ୍ମବନ ପୋଡ଼ିଗଲା ! ଯାହା କର୍ମରେ ଯେଉଁ ଦଶା ଥାଏ, କୌଣସି ପ୍ରକାରେ ତାହାର ଅନ୍ୟଥା

କରି ହୁଏନାହିଁ । ଦେଖ, ପଦ୍ମ ବ୍ରହ୍ମାଙ୍କର ଆସନ, ଲକ୍ଷ୍ମୀଙ୍କର ଆଳୟ, ଏବଂ ସୂର୍ଯ୍ୟଙ୍କର ପ୍ରିୟତମ, ପୁଣି ଭଗବାନ ସ୍ୱୟଂ ତାହାକୁ ଚିହ୍ନରୂପେ ହସ୍ତରେ ଧରିଛନ୍ତି; ଏମାନେ କେଡ଼େ କେଡ଼େ ପ୍ରଭୁ; ପଦେ କଥାରେ ପଦ୍ମ ଅଭୟ ପାଆନ୍ତା; କିନ୍ତୁ ସେ ହିମପାତ କାଳରେ କେହି ତାହାକୁ ରଖିପାରିଲେନାହିଁ, ପଦ୍ମର କପାଳରେ ଯାହା ଥିଲା, ସେ ତାହା ଭୋଗ-କଲା; ପ୍ରକୃତି-ନିୟମ ଓ ଭାଗ୍ୟଚକ୍ର ସେ ଲଙ୍ଘନ କରି ପାରିଲା ନାହିଁ, ବା ତାହାକୁ ସେଥିରୁ କେହି ରକ୍ଷା କରିପାରିଲେନାହିଁ । ସମସ୍ତେ କୁଶଳରେ ସୁମୁଖ, କିନ୍ତୁ କଷ୍ଟକାଳରେ ବିମୁଖ ହୁଅନ୍ତି । ସୁଖକାଳର ଶୀତଳ କର୍ପୂର-ଚନ୍ଦନ ଦୁଃଖକାଳରେ ଅଗ୍ନିଠାରୁ ବଳି ଅପ୍ରୀତିକର ହୁଏ । କଳାକର-କର ବିଷପରି ଜଣାଯାଏ ଏବଂ ଦକ୍ଷିଣ ପବନ ଅସହ୍ୟ ହୁଏ । କିନ୍ତୁ ପ୍ରୀତି ଦୁଗ୍ଧ ଓ ଜଳ ମଧ୍ୟରେ ଥିବାର ଜଣାଯାଏ, କାରଣ ଜଳ ମିତ୍ର ସଙ୍ଗରେ ଅଗ୍ନିରେ ଝାସ ଦେବାର ଦେଖାଯାଏ । ଲୋକମାନେ ଶୀତରେ ରହିନପାରି ସହର ଯେ ଯାହାର ଉପାୟ ବିଧାନ କଲେ । କୋଟି-ବ୍ରହ୍ମାଣ୍ଡନାଥ କେତେରୂପେ ଅମ୍ବର ଲଗି ହୋଇ ସୁଖରେ ରହିଲେ । କିନ୍ତୁ ତେଜ-ସମ୍ପତ୍ତି ଘେନି ସୂର୍ଯ୍ୟ ଦକ୍ଷିଣ ଦିଗକୁ ଗତକଲେ । ଅଗ୍ନି ଶୀତକୁ ମହାଭୟ କରି ପୁରେ ପୁରେ ନିଜର କାନ୍ତି ଉଦୟ କଲେ । କହିଁ କହିଁ ଘୋର ଜାଡ଼ ମାଡ଼ି ପଡ଼ିଲା । କେହି ଶୀତରେ କମ୍ପକାତର ହୋଇ କର ଯୋଡ଼ିଲା, କେହି ହୃଦରେ କରଯୁଗ ଛନ୍ଦି କଷ୍ଟରେ ଶୀତକୁ ବହୁତ ନିନ୍ଦା କଲା । ଶୀତକୁ କଣ କରିବା କହି, ଲୋକମାନେ ନତତନୁ ହୋଇ ବିକଳରେ ଚଯଗ୍ନୁ ଲୋଡ଼ିଲେ । କେହି ଶୀତରେ ଆକୁଳ ହୋଇ ଦୁକୂଳ-କାନ୍ତ-କୋଳ ଆଶ୍ରୟ କଲା । କେହି ବସ୍ତ୍ର ନ ପାଇ ଶୀତ ରାତକୁ କୋଟି ଯୁଗ ମଣିଲା ଏବଂ କୁଣ୍ଡଳୀ କରି ଶୋଇ ଜାଡ଼ରେ ଜଡ଼ବତ୍ ହେଲା । ଶିଶୁ ମାତୃ ସ୍ତନରେ ମୁହଁ ଗୁଞ୍ଜି ଗୁଢରେ ଗୁଢ ହୋଇ ଶୋଇଲା । ବାଳକବାଳିକା ଶୀତରେ ଦାନ୍ତୁଡ଼ି ମାରି ବାପମାଆ ପେଟତଳେ ଗରମ ପାଇ ସୁଖ-ନିଦ୍ରା ଗଲେ । କେହି ନବ ନିଶାର ସଜାଡ଼ ମନରୁ ଶୀତଭୟ ଛାଡ଼ିଲା । କେହି ତୁଳି-ସୁପାତକୁ ମଞ୍ଜିଷ୍ଠାରଙ୍ଗରେ ରଙ୍ଗାଇ ତାହାକୁ ନିଜର ଅଙ୍ଗସଙ୍ଗ କଲା । କେହି ଶୀତଳ ଜଳକୁ ମହା ଭୀତିଙ୍କର ତପ୍ତଜଳରେ ପ୍ରୀତି କଲା ।

ଜାଡ଼ ବହୁତ ବାଧିବାରୁ ସମସ୍ତେ ମନ୍ଦିର-ଭେଦ ନିରୋଧ କଲେ । ଲୋକେ ଚନ୍ଦ୍ର-ଚନ୍ଦନ-ସ୍ନେହ ତ୍ୟାଗ କଲେ । କାହା ଆଗରେ ହସନ୍ତୀ ହସିଲା, କେହି ଅଗୁରୁଧୂପପୂରରେ ପଶି କୃଷ୍ଣଚରିତ ଗାନକଲା । କେହି କେହି ପୃଷ୍ଠରେ ଭାନୁ, ଉଦରରେ ହୁତାଶନ ସେବା କରି ଧନା ବସନରେ କୌପୀନ ମାତ୍ର କାଳ ବଞ୍ଚିଲେ । କେହି ସକାଳେ ଶଯ୍ୟାରୁ ଉଠି କହିଲା, 'ଓହୋ, କାଲି କି ଜାଡ଼ କଲା; ଏ ଘୋର ଜାଡ କେବେ ଛାଡ଼ିବ ।'

ବନମାଳୀ ବ୍ରଜନନ୍ଦନ ଶ୍ରୀକୃଷ୍ଣ କୌଷେୟ କଉପ ଅଙ୍ଗରେ ଦେଇ ଶିରରେ କମନୀୟ ଶିରସ୍ତ୍ରାଣ ଓ ଅଙ୍ଗୁଳିରେ ଅଙ୍ଗୁରୀୟ ଲଗାଇ ହିମର୍ତ୍ତୁ ସନ୍ଧରେ ବ୍ରଜ ପଥରେ କୌତୁକରେ ବୁଲୁଥିଲେ ଏବଂ ନାନା କେଳି କରି ଗୋପୀମାନଙ୍କର ପ୍ରୀତି ସମ୍ପାଦନ କରୁଥିଲେ । ଦିନେ କୌଣସି ଗୋପୀ ଆଗରେ ନିଆଁ ଉହ୍ଲାଇ ଜଳୁଥିବାର ଦେଖି ଶ୍ରୀହରି ପରିହାସଚ୍ଛଳରେ କହିଲେ, "ତୁମ୍ଭେ ତ ଉତ୍ତମ ଯାକ ନିଜ ପାଖରେ ରଖିଛ, ମୁଁ ହିମକୁ ଯାଇ କହିବାରୁ ସେ ଉତ୍ତମ କାହିଁ ଗଲା ବୋଲି ଖୋଜୁଅଛି, ଏ ତ ଏ ଠାରେ ଆସି ଲୁଚିଛି ।" ଏକଥା ଶୁଣି ଗୋପୀ ବୋଇଲା,—"ଏପରି ରସିକ କଥା କେଉଁଠାରେ ସମ୍ପାଦି ଥିଲେ, ଯେବେ ଶୀତରେ କମ୍ପୁଛନ୍ତି, ତେବେ ମୋ ପାଖରେ କିପାଁ ଆସି ବସୁନାହାନ୍ତି ?" କୃଷ୍ଣ କହିଲେ,—"ତୁମ୍ଭ ହୃଦୟର ଅଯାଚିତ ଉଦାରତା ଓ ହିତୈଷଣା ଭୋଗ କରିବାପାଇଁ ମୋର ଯୋଗ ନାହିଁ । ମୁଁ ପୂର୍ବେ କୌଣସି ତପ କରିନାହିଁ; କି କୌଣସି ପୀଠରେ ଜପ କରିନାହିଁ, କି ଶିବଙ୍କ ଶିରରେ ଚମ୍ପା ଚଢ଼ାଇନାହିଁ, ତେବେ ତୁମ୍ଭର ଉତ୍ସର୍ଗୀକୃତ ଦାନ କିରୂପେ ଭୋଗ କରିପାରିବି ?" ଗୋପୀ ଉତ୍ତର କଲା,—" ହେ ଭଗବାନ, ଆପଣ ଏ ଜଗତର କେଉଁ ପୀଠକୁ ନିଜର କୋଠ କରିନାହାନ୍ତି; କେବେ ଶମ୍ଭୁଶିରରେ ନିଜର ଏ ପାଦପଦ୍ମ ଚଢାଇନାହାନ୍ତି; ଏବଂ ଆପଣ କେଉଁ ତାପୀ ତପୀର ତପ ନୁହନ୍ତି ?" କୃଷ୍ଣ ତଦୁତ୍ତରରେ କହିଲେ,—"ଯେତେ ହେଲେ କଣ ହେବ,

କେହି ଏପରି ବର ଦେଇ ପାରିଲେନାହିଁ ଯେ, ମୁଁ ଭକ୍ତ ସମକ୍ଷରେ ନିରନ୍ତର ରହିବି ।"

ଅନନ୍ତର ଶ୍ରୀରଙ୍ଗ ସେଠାରୁ ବିଜେ ହୋଇ ଯାଇ ଅନ୍ୟ ଜଣେ ଗୋପୀକୁ ବିନମ୍ରସ୍ୱରରେ କହିଲେ, "ତୁମ୍ଭର କଣ ଶୀତକୁ ଭୟ ନାହିଁ ? ତୁମ୍ଭେ ବିସ୍ମରୁଛ ଯେ ବିହି ତୁମ୍ଭକୁ ଏ ଋତୁର ବାହାରେ ରଖିଛି ? ତୁମ୍ଭର ପ୍ରସନ୍ନ ବଦନ ଦେଖି ମନେ ହେଉଛି, ମୋର ପ୍ରାର୍ଥନାରେ ସୁଫଳ ଫଳିବ । ମୋର କଳେବର ଶୀତରେ କମ୍ପୁଅଛି, ଗଣ୍ଡିଏ ତନୁ-ନବ-ନିଶାର ଦାନ-କରି ମୋର ପ୍ରାର୍ଥନା ପୂରଣ କର ।" ଗୋପୀ କହିଲା, "ଆପଣଙ୍କର କେତେ ଶୀତହାରୀ ନାହାନ୍ତି; ତଥାପି ମୋର ତନୁ-ନିଶାରରେ ମନ ବଳୁଛି କାହିଁକି ? ଆପଣ ଆପେ ଆପେ ଆସି ଦାନ ମାଗନ୍ତି ଏବଂ ଦାନ ପାଇଲା ମାତ୍ରେ ପ୍ରସ୍ଥାନ କରନ୍ତି । ହେ କୃଷ୍ଣ, ଆପଣ ଭ୍ରମର ତୁଲ୍ୟ, ଭ୍ରମର ଯେପରି ନାନାଫୁଲରେ ବସେ, ମାତ୍ର ରସ ଶେଷ ହେଲେ ତାହାର ପାଖକୁ ଆଉ ଆସେନାହିଁ, ଏବଂ ଅସ୍ଥିରଚିତ୍ତ ହୋଇ କାହାର କେଉଁ ଗୁଣ ତାହା ଦେଖେନାହିଁ; ଆପଣ ତଦ୍ରୂପ ନାନା ଭକ୍ତର ହୃଦୟରେ ବିହାର କଲେହେଁ ହୃଦୟ ଦାନ ଦେବା ଶେଷ ହେଲେ ବା ଭକ୍ତରେ ଟିକିଏ ବାଧା ପଡ଼ିଲେ ଆଉ ଆପଣ ଧରାଛୁଁଆ ଦିଅନ୍ତିନାହିଁ ଏବଂ ଯେତେ ଗୁଣ ଥାଉ ପଛକେ ତତ୍ପ୍ରତି ଦୃକ୍‌ପାତ ମଧ୍ୟ କରନ୍ତିନାହିଁ; ଆପଣଙ୍କର ଆବର୍ତ୍ତିବ ତଡ଼ିତ୍‌ପରି ଚଞ୍ଚଳ । ଭକ୍ତି-ରସ ଭୋଗ ହେଉଥିବା ଯାଏ ତୁହେଁ ସ୍ନେହ କରୁଥାଅ; ତୁମ୍ଭେ କୃଷ୍ଣ ଭ୍ରମରକୁ ଉପାସୁନାହିଁ, ଆପଣଙ୍କର ବହୁ ଭକ୍ତ ଅଛନ୍ତି, ସେମାନଙ୍କ ସଙ୍ଗରେ କାଳ ନଅନ୍ତୁ ।" ଭକ୍ତର ଏପରି ଅଭିମାନ-ବାଣୀ ଶ୍ରବଣ କରି ଭଗବାନ୍ ଶ୍ରୀକୃଷ୍ଣ ବୋଇଲେ,— "ତୁମ୍ଭପରି ଭକ୍ତ ମୋର ଜୀବନ, କେହି କେବେ ଜୀବନ ଛାଡ଼ିପାରେ କି ? ଅଭିମାନ ତ୍ୟାଗ କରି ଭକ୍ତପରବଶ ହୁଅ ଏବଂ ଦ୍ୱେଷରାଗାଦି ବୃତ୍ତିଖିତ ସମ୍ପୂର୍ଣ୍ଣରୂପେ ପରିହାର କରି ଏକାବେଳକେ ପ୍ରଶାନ୍ତ ଓ ନିସ୍ତରଙ୍ଗ ହୁଅ । ତୁମ୍ଭର ଜ୍ଞାନଭକ୍ତି ପ୍ରଭୃତି ଉଦିତ ହେବା ଆଗରୁ ମୁଁ ତୁମ୍ଭଠାରେ ସଦୟ ହୋଇଅଛି । ବର୍ତ୍ତମାନ ମୁଁ ତୁମ୍ଭର ସାଧନାରେ ସନ୍ତୁଷ୍ଟ ହେଲି, ମୋର

ପ୍ରେମମୂର୍ତ୍ତି ଦର୍ଶନକରି କୃତାର୍ଥ ହୁଅ।” ଏହିପରି ଶାନ୍ତଶିଷ୍ଟବଚନ ପ୍ରୟୋଗାନ୍ତେ ଗୋପୀବଲ୍ଲଭ ସ୍ୱପ୍ରକାଶ ଭଗବାନ ଶ୍ରୀକୃଷ୍ଣ ଗୋପୀ ହୃଦୟକୁ ଆଲିଙ୍ଗନ କରି ଓ ତାହାର ଭାବକୁ ଆଶ୍ରୟ କରି ଯୋଗି-ଜନ-ଦୁର୍ଲ୍ଲଭ ନଟବର-ମୂର୍ତ୍ତି ପ୍ରକାଶ କଲେ। କିନ୍ତୁ ପରକ୍ଷଣରେ ମେଲାଣି ମାଗି ଗମନ କରିବାକୁ ମନ କଲାରୁ ଗୋପୀ ଭକ୍ତି-ଯୋଗ ଦୃଢକରି ଭଗବାନଙ୍କୁ ସ୍ଥିର ଓ ନିଶ୍ଚଳ କରି-ଦେଲା। ଭଗବାନଙ୍କର କିଛି ଆୟତ୍ତ ରହିଲାନାହିଁ, କାରଣ ସ୍ନେହହିଁ ଆବ୍ରହ୍ମ-ସ୍ତମ୍ବ ସମସ୍ତଙ୍କୁ କିଙ୍କରଠାରୁ କିଙ୍କର କରିପାରେ। ପ୍ରେମ କାହାକୁ କଣ କରିନାହିଁ? ଫୁଲଲିଟ ମହୁମାଛି କାଠକୁ କାଟିପକାଏ, କିନ୍ତୁ କୁସୁମରେ ଆସ୍ଥାନ କରି କୋମଳକୁ କୋମଳ ସମ୍ମାନ ଦାନ କରେ; ଅରବିନ୍ଦ ସ୍ନେହରେ ବନ୍ଦୀ କଲେ ମିଳିନ୍ଦ ମନରେ ସାନନ୍ଦ ହୁଏ। କୃଷ୍ଣକଥା ମଧ୍ୟ ସେହି-ପ୍ରକାର; ସେ ପ୍ରଭୁ କର୍କ୍କଶଠାରେ କଠୋର ଓ ନିର୍ମ୍ମମ ହୁଅନ୍ତି, ମାତ୍ର ସ୍ନେହରେ ପରାଭବ ସହନ୍ତି ଏବଂ ଭକ୍ତ କଲେ ଭକ୍ତପାଦ ବହନ୍ତି। ଜୀବମାନେ ତାହାଙ୍କୁ ଅନୁସରଣ କରି ସେହି ବ୍ୟବହାରର ଅନୁକରଣ କରିଥାନ୍ତି। ସ୍ୱର୍ଗ-ମର୍ତ୍ତ୍ୟବାସୀ ପ୍ରେମର ଦାସ; ପ୍ରେମ ଭିନ୍ନ କାହାରି ସନ୍ତୋଷବିଧାନ ହୋଇନପାରେ। ଆତ୍ମା-ପରମାତ୍ମାର ମିଳନ ଅତି ବିଚିତ୍ର ଭାବମୟ ରହସ୍ୟ। ଗୋପୀନାଥ ଏହିରୂପେ ଗୋପୀ-ହୃଦୟରେ ଆନନ୍ଦତରଙ୍ଗ ଖେଳାଇ ରଜନୀଶେଷରେ ସ୍ୱସ୍ଥାନକୁ ଗମନ କଲେ।

ଭକ୍ତି-କଣ୍ଠ-ହାର ହରି ଶିଶିର ଋତୁରେ କୁହୁଡ଼ିରେ ବୁଲି ଗୋପରେ ବିହାର କରୁଥାନ୍ତି। ଭଗବାନ କେଉଁ ଭକ୍ତକୁ ଆକର୍ଷଣ କରନ୍ତି, କାହା ଦ୍ୱାରା ମଧ୍ୟ ଆକୃଷ୍ଟ ହୁଅନ୍ତି, ଜ୍ଞାନ ଭକ୍ତି ସୌନ୍ଦର୍ଯ୍ୟାଦି ଅବଲମ୍ବନ କରି ମନ ଅନୁସାରେ ଭଗବାନ ଭକ୍ତର ଚକ୍ଷୁଗୋଚର ଓ ଆତ୍ମାନୁଭୂତ ହୁଅନ୍ତି। କେତେବେଳେ ଅପ୍ରତ୍ୟାଶିତ ଅଲକ୍ଷିତଭାବରେ ଚୋର ପରି ଆସି ଭକ୍ତର ହୃଦୟ-ଦ୍ୱାର ଉନ୍ମୋଚନ କରନ୍ତି। କେବେ ବା ଭକ୍ତକୁ ଅର୍ଦ୍ଧଚନ୍ଦ୍ର ଦେଇ ତାହାର ଗର୍ବ ଖର୍ବ କରନ୍ତି ଏବଂ ଦଣ୍ଡ ଦେଇ ଭ୍ରାନ୍ତି ଦୂର କରନ୍ତି। ମଧୁକର ଯେପରି କୁସୁମରେ ସର୍ବଦା ସଞ୍ଚାର କରେ, ଭକ୍ତସମ୍ବଳ ଭଗ-

ତାନ ସେହିପରି ଭକ୍ତ-ହୃଦୟରେ ନିରତ ବିହାର କରନ୍ତି ଏବଂ ଗୋପୀ-ନାଥ ଗୋପୀମାନଙ୍କ ସଙ୍ଗରେ ସେହିପରି କାଳ ନିଅନ୍ତି ।

ଏ ଅନିତ୍ୟ ସଂସାରରେ କିଛି ନିଶ୍ଚଳ ନୁହେଁ । କୃଷ୍ଣନାମ ହିଁ ସାର ମାତ୍ର । ଅତଏବ, ହେ ସାଧୁଜନମାନେ, କୃଷ୍ଣରୂପ ଧାନ କର; କୃଷ୍ଣଚରିତ ଗାନ କର । କୃଷ୍ଣକଥା ଶ୍ରବଣରେ ଶୁଣ । ଜଗତକୁ କୃଷ୍ଣ ବୋଲି ମଣ, କୃଷ୍ଣ କାର୍ଯ୍ୟରେ ତତ୍ପର ହୁଅ, କୃଷ୍ଣ-ଭୋଗ ପାଇଁ ଭଲ ଦ୍ରବ୍ୟ ଥୁଅ ଏବଂ କୃଷ୍ଣ-ପ୍ରୀତିରେ ପ୍ରାଣ ଶ୍ରଦ୍ଧାପୂର୍ବକ ଉତ୍ସର୍ଗ କର ।

## ଦ୍ୱାଦଶ ପରିଚ୍ଛେଦ ।



ଶିଶିର ଅନ୍ତେ କୁସୁମ ସମୟ ହସି ହସି ଆସିଲା । ଦକ୍ଷିଣ ପବନ ବହିବାକୁ ଲାଗିଲା । ବସନ୍ତ-ଦୂତ ମହାମତ୍ତ ହୋଇ ପଞ୍ଚମରେ ସ୍ୱର ତୋଳିଲା । ଜୀବଜଗତ ଶୃଙ୍ଖଳା ଅନୁଭବ କଲା । କମଳ, ରସାଳ, ନୀଳୋତ୍ପଳ, ନଆଳୀ ଓ ଅଶୋକ ଏହି ପଞ୍ଚପୁଷ୍ପ ମାନବର ପଞ୍ଚପ୍ରାଣ ବେଦନା ପାଇଁ ଉତ୍କଣ୍ଠିତ ହେଲା । କେତକୀ-କୁନ୍ତ ପ୍ରକଟିତ ହୋଇ ଯୁବଜନ-ମନ ଭେଦକଲା । କୁସୁମବତୀ ମାଧବୀକୁ କୁସୁମଧନୁରୂପେ ସଜାଇ ତହିଁରେ ଭ୍ରମରଶ୍ରେଣୀକୁ ଗୁଣ କରି ବସନ୍ତ ସଖାପଣରେ ମଦନକୁ ଫୁଲଧନୁଟିଏ ଉପହାର ଦେଲା । କିଂଶୁକ ପାଠ କରବାଳପ୍ରାୟ ରଙ୍ଗକୋଷରେ ଥାଇ ସମସ୍ତଙ୍କର ସୁଖ ଉତ୍ପାଦନ କଲା । ବସନ୍ତ-ନୃପତିଙ୍କର ଶ୍ୱେତଛତ୍ର ହେଲା ନାଗେଶ୍ୱର ପୁଷ୍ପ, ପତାକା ହେଲା ମନନେତ୍ରହାରୀ--କିଶଳୟ ପନ୍ତି, ଏବଂ ଧୂପଗନ୍ଧ ହେଲା ମଲ୍ଲିକାର ସୌରଭ; ପୁଣି ଶଙ୍ଖୁଆ ମଧୁପ କେଳି-କଦମ୍ବରେ ଶଙ୍ଖଧ୍ୱନି କଲା । କୋକିଳ କୁହୁ କୁହୁ ରବୁଁ ରବୁଁ ପ୍ରବଳରବରେ କୁହୁ ତାନ ଉଠାଇଲା ।

ବସନ୍ତ ପ୍ରାଣୀ ମୋଦ-ମଦ-ମତ୍ତ ହେଲା । ଅଦ୍ଭୁତକର୍ମା ପ୍ରେମ ମାନୀ ଭକ୍ତର ମାନ ଛଡ଼ାଇ ଏବଂ ଭଗବାନଙ୍କୁ ତାହା ଆଡ଼କୁ ଆକର୍ଷଣ କରି ନିଜର ଅପ୍ରତିହତ ମହିମାର ପରିଚୟ ଦେଲା । ପ୍ରେମ ହେତୁରୁ ସିନା ଯୋଗୀବର ଶିବ ଶିବାଙ୍କୁ ଅର୍ଦ୍ଧାଙ୍ଗରେ ବୋହିଲେ; ପ୍ରେମ ହିଁ ତେଜୋବନ୍ତ ଭାସ୍କରଙ୍କୁ ଶ୍ରୁସ୍ତ୍ୱାକାନ୍ତ କରି ତାହାକୁ ନିତେଜୋହୀନ କରିଅଛି; ସୁତରାଂ ଶ୍ରୀକୃଷ୍ଣଙ୍କୁ ତାଙ୍କର ସେବକ ପାଖକୁ ଓଟାରିବା ପ୍ରେମ ପକ୍ଷରେ କିଛି ବଡ଼ କଥା ନୁହେଁ । ପ୍ରେମ-ଦେବତାର ବଢ଼ାଇ କହିହେବନାହିଁ; ସେ କାହାକୁ ବସ କରି ନାହିଁ ଏବଂ କାହାର ଧୈର୍ଯ୍ୟ ଛଡ଼ାଇ ନାହିଁ ? ନିଆଁକୁ ବାଆ ପରି ବା ମଦନକୁ ବସନ୍ତ ପରି ପ୍ରେମକୁ ପ୍ରକୃତ ସହାୟ । ଏକେ ତ ପ୍ରେମର ଉଦ୍ରେକରେ ଭକ୍ତକୁ ଭୁତ ବାଇ କରେ, ତହିଁରେ ପୁଣି ପ୍ରକୃତ-ରାଣୀ ସ୍ଥାନ କାଳ ବା ଦୃଶ୍ୟର ସାହାଯ୍ୟରେ ତାହାକୁ ପଗ୍ଳାଇ ଦଏ । ମନୋରମ କୌତୁକପ୍ରଦ ସରସ ବସନ୍ତର ଆଗମନରେ ଏବଂ କୁସୁମ-ହାସିନୀ ଶୋଭାରାଣୀର ମର୍ତ୍ତ୍ୟ-ପ୍ରବେଶରେ କଶୋରୀ ଗୋପବାଳାମାନେ କ୍ରୀଡ଼ାଭିଳାଷିଣୀ ହୋଇ ମନ ଫୁରୁଣା କରି ପରସ୍ପରକୁ କହିଲେ—"ସଖି ! ବୃନ୍ଦାବନ ଦେଖିବା ଚାଲ । ବସନ୍ତ ପ୍ରବେଶରେ କୁସୁମ-ବିକାଶ ମନୋହର ହୋଇଥିବ ।" ଏହିରୂପ କଥାବାର୍ତ୍ତା କରି କଶୋରୀଏ ବନବିହାର ପାଇଁ ତରତର ହୋଇ ବାହାର ହେଲେ । ଅପଲକ ନେତ୍ର ବୃନ୍ଦାବନ ଦେଖିବା ପାଇଁ ଆକାଶପ୍ରାପ୍ତ ପ୍ରକାଶ ପାଇଲା । ସୁକ୍ଷେତ୍ର ଓ ସୁଦୃଶ୍ୟ ସାଧନାରେ ଯେ ଅତୀବ ସାହାଯ୍ୟ କରେ, ତାହା ସାଧକମାନେ ସ୍ୱୀକାର କରିବେ । ସୁତରାଂ ଗୋପିକା-ଭକ୍ତମାନେ ସାଧନାରେ ସୁଯୋଗ ପାଇଁ ବୃନ୍ଦାବନ ଓ ବସନ୍ତ କାଳକୁ ମନେ ମନେ ଅଭିନନ୍ଦନ କଲେ ଏବଂ ସେମାନଙ୍କ ସାହାଯ୍ୟରେ ଭଗବାନଙ୍କର ଅନୁସନ୍ଧାନ ପାଇବା ଆଶାରେ ଗୃହରୁ ପ୍ରସ୍ଥାନ କଲେ ।

ସେମାନେ ଯେଉଁ ମଧୁର ରୂପଶ୍ରୀ ଘେନ ବନଭ୍ରମଣ-ଉଦ୍ଦେଶ୍ୟରେ ବାହାରିଲେ, ତାହାର ଅପୂର୍ବ ଚିତ୍ର କବିର ଚିତ୍ରତୂଳିକା ଦ୍ୱାରା ଅଭିନବ ଭାବରେ ଅଙ୍କିତ ହେଲା । କ୍ରୀଡ଼ାପାଇଁ ନନ୍ଦନବନକୁ ଯିବାବେଳେ ସ୍ୱର୍ଗର

ଅପ୍‌ସରାମାନେ କାହିଁ ତ ଏତେ ତୋରା ଦଶନ୍ତନାହିଁ । କବ କଲ୍ପନା-ଭୂଜାରେ ଭୁଲଲବେଳେ ଅପ୍‌ସରାମାନେ ଭୂଜାପ୍ରାପ୍ତ ଉଲ୍ଲାସ ହେଲେ, ଏବଂ ଗୋପୀମାନଙ୍କ ସଙ୍ଗରେ କଳାଏ ସୁଦ୍ଧା ସମାନ ହୋଇନପାର ଉର୍ଦ୍ଧ୍ୱକୁ ଉଠି ଉଠି ଶେଷରେ ସ୍ୱର୍ଗରେ ନୃତ୍ୟଗୀତ କର ପ୍ରଫୁଲ୍ଲ ମନରେ ବାସ କଲେ । ପୁଣି ବ୍ରଜବାଳାମାନେ ଭୂଳରେ ଗୁରୁତ୍ୱଶତଃ ମର୍ତ୍ତ୍ୟରେ ରହିଲେ । ସୁତରାଂ ସେମାନେ ଅପ୍‌ସରା ବୋଲି କପର କୁହାଯାନ୍ତେ ? ଉମ୍ଭାପଗ ନାସ୍ତ କେବଳ ସେମାନଙ୍କ ଜାନୁର ଉପମାରେ ଲାଗେ ବୋଲି ନଜକୁ କୃତାର୍ଥ ମନେକରେ । ଗଜରାଜ, କଳହଂସ, କଳାକର, ମେରୁ ଓ ଶଙ୍ଖ ଦେଲେ ବେଳେ କସ୍ୱତ ପରମାଣରେ ସେମାନଙ୍କ ଉପମା-ରୂପେ ଲକ୍ଷ୍ୟ କରହୁଅନ୍ତି ବୋଲି, ସେମାନେ ଯଥାକ୍ରମେ ସୁରେଶଙ୍କ ଆସନ, ବ୍ରହ୍ମାଙ୍କ ବାହନ, ଶିବଙ୍କ ଭୂଷଣ, ଦେବତାଙ୍କ ନକେତନ ଓ ବିଷ୍ଣୁଙ୍କ ପାଞ୍ଚଜନ୍ୟ ହୋଇ ଲୋକରେ ପୂଜିତ ଓ ଆଦୃତ ହେଲେ । ଦେବତା-ମାନେ ଯେଉଁ ସୁଧାପାନ କରନ୍ତି, ତାହା ଗୋପୀକଥାର କଦାପି ସମାନ ହେବକ ? ସେମାନେ ଅଙ୍ଗରେ ଯେଉଁ ପାରଜାତ ମଣ୍ଡିତୁଅନ୍ତି, ତାହା କେତେ ତପକରି ଗୋପୀହାସର ସର ହୋଇଅଛି । କାନ୍ତି ସମ କ୍ଷଣ-କାନ୍ତି ନୁହେଁ; ତେଣୁ ସେ କାଦମ୍ବିନୀ କୋଳରେ ଜ୍ୟୋତ ଚଞ୍ଚଳ ଦେଖାଇ-ନ ଦେଖାଇଲପରି ହେଉଅଛି । ରଜତ ବହୁତ ଲାଜ ପାଇ ଅନଳରେ ଅଙ୍ଗ ଦହଲ, ପୁଣି କ ବସ୍ତୁର ସ୍ୱର୍ଗ-ଶ୍ୱେତଗଙ୍ଗାରୂପରେ ବହିଲା । ତାରାଗଣ ଅଙ୍ଗୁଳିସଦୃଶ ହୋଇନପାର ଲଜ୍ଜା ହେତୁ ଜ୍ୟୋତ ନ ଦେଖାଇ ଦବ-ସରେ ଶୂନ୍ୟଗତ କଲେ । ଏହିରୂପେ ଯେତେକ ସ୍ୱର୍ଗବାସୀ ସମସ୍ତେ ଭୂଜରେ ଉଲ୍ଲାସ ପ୍ରମାଣିତ ହେଲେ । ସେମାନଙ୍କୁ କୃଷ୍ଣପ୍ରିୟତମା ଗୋପାଙ୍ଗନାଙ୍କର ଉପମାଚ୍ଛଳ କଲେ କୌଣସି ଯଶ ନାହିଁ, ତଥାପି କବତା, ବନତା, ଲତା ବନାଆଶ୍ରୟରେ ବର୍ତ୍ତନ୍ତିନାହିଁ, ସେହି ହେତୁରୁ କେବଳ ଏରୂପ ଉପମାର ଅବତାରଣା । କନକ-ଲତା ଫୁଲଫଳ ଧର ଗୁଳିଲେ ଯେପର ସଚଞ୍ଚ ଦେଖାଯାଏ, କଳାବତୀମାନେ ଗମନକାଳରେ ସେହିପର ମନନେତ୍ର-ମୋହିନୀ ହୋଇ ଧୀରେ ଧୀରେ ବୃନ୍ଦାବନରେ ପ୍ରବେଶ କଲେ ।

ବୃନ୍ଦାବନର ସେକାଳ ଶୋଭା ବର୍ଣ୍ଣନାତୀତ । ନାନା-ବିହଗ-କାକଳୀରେ ବନ-ଦଶଦିଶ ପୂର୍ଣ୍ଣ; କାଳିନ୍ଦୀ-ଶୀତଳଶୀକର ଓ ପୁଷ୍ପ-ପରିମଳ ଯେନ ମନ୍ଦମଳୟାନିଳ ମୃଦୁ ମୃଦୁ ପ୍ରବାହିତ; କୁରଙ୍ଗ-ମଦ-ଗନ୍ଧରେ ବନସ୍ଥଳୀ ସୁବାସିତ । କୁସୁମଚୁମ୍ବୀ ଭୃଙ୍ଗ ଝଙ୍କାର କରୁଛି; କପୋତହୁଙ୍କାର ଅହଙ୍କାରିର ତର୍ଜନପ୍ରାୟ ନାଦିତ ହେଉଛି । ବୃନ୍ଦାବନର ଏ ଶୋଭାକୁ ଚକ୍ଷୁରେ ଗ୍ରହିଁ ଓ ଚିତ୍ତରେ ଚେତି ଚଞ୍ଚଳ ଚରଣରେ ସ୍ଥୂଳ କୁଞ୍ଜରଗମନା-ମାନେ କୁଞ୍ଜମାନ ଦେଖି ଦେଖି କୃଷ୍ଣକଥା ସ୍ମରଣ କଲେ । କିଂଶୁକ, ଅଶୋକ, ଚମ୍ପା, କୁରୁବକ, କରୁଣା, କେଶର, ନାଗେଶ୍ୱର, କୁରୁବେଲ୍ଲୀ, ମଲ୍ଲୀ, ମାଧବୀ, କୁଟ୍ଟିଅନା, କେତକୀ, କରବୀର, କରକ, ପୁନାଗ, ତମାଳ, ମନ୍ଦାର, ବକୁଳ, ରସାଳ ଆଦି କୁସୁମାତ୍ମକ ତରୁ-ଲତାଗୁଳ୍ମ କୁସୁମଭରରେ ନେତ୍ରବିନୋଦନ ହୋଇଅଛନ୍ତି ।

ଏରୂପ ଶୋଭାସମ୍ଭାର ଦେଖି ଶୋଭାଧାର ଭଗବାନଙ୍କ ବିରହରେ ଭକ୍ତର ଧୈର୍ଯ୍ୟ-ଲୋପ ହୁଏ ସନ୍ଦେହ ନାହିଁ । ବିଚ୍ଛେଦରେ ନାଗେଶ୍ୱର ପୁଷ୍ପ ନାଗେଶ୍ୱରସର୍ପ ତୁଲ୍ୟ ହୁଏ, କେତକୀ କରତପ୍ରାୟ ହୃଦୟ କରତେ; କୁସୁମୋତ୍ତମ କୁଟ୍ଟିଅଣୀ କୁଟ୍ଟିକାର କାର୍ଯ୍ୟ କରେ, ରଙ୍ଗ କିଂଶୁକ ଅର୍ଦ୍ଧ-ଚନ୍ଦ୍ରବାଣ ପ୍ରାୟ ବକ୍ଷ ବିଦାରି ରକ୍ତରଞ୍ଜିତ ହୁଏ, ଏବଂ ସଂଯୋଗ-ପଳାଶର ଇଚ୍ଛା ଜନ୍ମାଏ; ତେଣୁ 'ଏହା ପଳାଶନାମରେ ବିଦିତ ହୋଇଅଛି । କନକକୁସୁମ ଚମ୍ପକ ଅକାଳରେ କୁସୁମକଳାପ ବିକାଶ କରି ସଙ୍ଗମେଚ୍ଛା ପୋଷଣ କରେ, କିନ୍ତୁ ଭୃଙ୍ଗ କ ଅବିବେକପଣରେ ତାହାକୁ ତ୍ୟାଗ କରିଅଛି । ନେତ୍ରସୁଖଶାଳ ରସାଳ ବିରହୀକୁ ରସାଣି ଦିଏ । କୋକିଳ ସମସ୍ତଙ୍କର ପ୍ରୀତିପାତ୍ର, ମାତ୍ର ସେ ବିରହରେ ବାମ ହୁଏ । ପ୍ରିୟ-ତମାର ଅପ୍ରୀତିଭାଜନ ହେଲେ କରୁଣାପୁଷ୍ପ କରୁଣାହୀନ ହୁଏ । ଅଶୋକ ଶୋକ ଆଣି ଶରୀରଶୋଷକ ହୁଏ । ନଆଳୀପୁଷ୍ପ ନିଆଁ ଳ ପରି ବିପତ୍ତିରେ ଦହନ କରେ । ପୁଂନାଗ-ପ୍ରିୟତମର ଅଭେଟରେ ପୁନ୍ନାଗପୁଷ୍ପ ପୁଂ-ନାଗ ହୁଏ । ସରବେଁ ଭଲ କାଳରେ ଭଲ ଏବଂ ଅଭଲରେ ଅଭଲ ହୁଅନ୍ତି । ବିରହ-କାର୍ଯ୍ୟ-ସିଦ୍ଧିକାରଣୀ କାମ-ଦୂତୀକୁ ଭସ୍ମ କରି କାମିନୀ ଭକ୍ତମାନେ

ସାଧର୍ମିଣୀ ମାଧବୀଠାରେ ସ୍ନେହଭାବ ପୋଷଣ କରନ୍ତି । ତପସ୍ୱୀସୁଷମ ସୁନାସୀ କାମିନୀମାନଙ୍କୁ ସୁନାସୀ ହେବାକୁ ଶିକ୍ଷାଦିଏ । ଗୋପୀମାନେ ସୁନାସୀଫୁଲମାଳ ଗଳାରେ ପିନ୍ଧିବାପାଇଁ ଇଚ୍ଛା କଲାରୁ ଜଣେ କହିଲା,- "ନା, ନା, ଏପରି କରନାହିଁ; ସୁଖଲୋଭରେ ଦୁଃଖ ପାଇବ, ତୁଣ୍ଡ-ଆସ୍ୱାଦରୁ କେତୁ ମୁଣ୍ଡ ଦେଲାପ୍ରାୟ ତୁମ୍ଭମାନଙ୍କର ଦଣ୍ଡ ହେବ ସିନା ।" ଅନ୍ୟ ସ୍ଥାନରେ ଡାଳିମ୍ବ ଦେଖି କେହି ଗୋପୀ କହିଲା, "ଏ ତଳକୁ ମୁଖ କରିଛି କାହିଁକି ?" ଅନ୍ୟ ଗୋପୀ କହିଲା, —"ତୁମ୍ଭର ଦନ୍ତପନ୍ତି ଦେଖି ଅନ୍ତଃସାରକ ତାହାର ହୃଦୟ ଫାଟିଗଲା, ଏବଂ ତୁମ୍ଭର ଅଙ୍ଗଶୋଭାକୁ ଅନାଇଁ ସଙ୍କୋଚରେ ତଳକୁ ମୁଖ କରି ତୁମ୍ଭ ସମାନ ସୁନ୍ଦର ହେବାପାଇଁ ସେ ଶ୍ରୀକୃଷ୍ଣଙ୍କୁ ତପସ୍ୟା କରୁଅଛି ।" 'ଏ ପୁଣି ତୋ'ପରି ତୋଷ କେବେ ହୋଇପାରିବ କି ?' ଏହା କହି ସେ ତାହାକୁ କୋମଳଭାବରେ ଆଖି ମନ୍ଦହାସ ମୁହିଁଲା ।

ଗୋପିକାମାନେ ଏହିରୂପେ ବନଭ୍ରମଣ କରି ଆନନ୍ଦରେ ଖେଳ ହେଲେ ଏବଂ ପଦେ ପଦେ ବିରହ-ବାଧା ଅନୁଭବ କଲେ । ଭକ୍ତ ଚକ୍ଷୁଷ୍ମାନ୍, ସେ ସର୍ବଦା ହରିଦର୍ଶନ କରିବାପାଇଁ ଚକ୍ଷୁ ମେଲାଇ ଥାଏ; ଗୋପାଙ୍ଗନାମାନେ ବୃନ୍ଦାବନର ପଦେ ପଦେ, ପୁଷ୍ପେ ପୁଷ୍ପେ ତାହାଙ୍କର ସନ୍ଧା ଖୋଜିବାକୁ ଲାଗିଲେ । ଆଉ ବହୁତ କହିବା ଉଚିତ ନୁହେଁ, କାରଣ କେବଳ ବହୁତ ଖାଇଲେ ଅମୃତ ମଧ୍ୟ ମନକୁ ସୁଖକର ହୁଏନାହିଁ । ହରିଭକ୍ତକୁ ପଦେ କଥା କହିଲେ ଯଥେଷ୍ଟ, ମାତ୍ର ପାଷଣ୍ଡକୁ ହରିକଥା କହି କହି ଥକିଗଲେ ମଧ୍ୟ କିଛି ଫଳ ହୁଏନାହିଁ, ପରନ୍ତୁ ଅମୃତତୁଲ୍ୟ ହରିକଥା ତାକୁ ବିରକ୍ତିକର ଜଣାଯାଏ । ସୁତରାଂ ଅଧିକ କହିବା ନିଷ୍ପ୍ରୟୋଜନ ।

ଅତଏବ ହେ ସୁକୃତବନ୍ତ ପ୍ରାଣି ! ଏ ପ୍ରକୃତ-ବୃନ୍ଦାବନରେ ଅଭାବ-ବେଦନା ଅନୁଭବକରି ସୌନ୍ଦର୍ଯ୍ୟର ଅନ୍ତରାଳରେ ପୁରାଣପୁରୁଷ ଶ୍ରୀକୃଷ୍ଣଙ୍କର ଦର୍ଶନପାଇଁ ବିରହିଣୀ ଗୋପବାଳାମାନଙ୍କ ବିରହର ସନ୍ନିଧି ଲାଭ କର ।



# ତ୍ରୟୋଦଶ ପରିଚ୍ଛେଦ ।



କଳଙ୍କରହିତ-କଳାକରଜିତ-ବଦନା ଗୋପ-ଲଳନା ଆନନ୍ଦରସରେ ପୂରି ପରସ୍ପର ହାସପରିହାସ କଲେ । କୃଷ୍ଣକୃପାରେ ସୁରସବନ୍ତା ହୋଇ-ଛନ୍ତି, ସେମାନଙ୍କର କାହିଁରେ ଚନ୍ତା ନାହିଁ । ବସନ୍ତରାଜ ଭାଗ୍ୟବନ୍ତ ବୋଲି ବୃନ୍ଦାବନରେ ରହିଛନ୍ତି । କେତେ ଜାତିର, କେତେ ବର୍ଣ୍ଣର ଓ କେତେ ପ୍ରକାର ଗନ୍ଧର କୁସୁମ ଯେଝା ମତେ ସୁଷମା-ସମ୍ଭାର ବାଢ଼ିଛନ୍ତି । ଅନ୍ୟତ୍ର ଏମନ୍ତ ସ୍ଥାନ ଆଉ ଦୃଷ୍ଟ ହୁଏନାହିଁ । ଏ ରମଣୀୟ ସ୍ଥଳୀ ଦେଖିଲେ ମନରେ ଅପାର ସୁଖ ଜାତ ହୁଏ; ସୁନାଗିକଳି, ମଲ୍ଲୀକଢ଼ି ଓ ଅଫୁଟନ୍ତ ରଙ୍ଗଣୀକୋରକ ବୃନ୍ତଉପରେ ହେମ-ମଣିମାଣିକ୍ୟ କଳିକା ଥୁଆ ହେଲାପରି ସୁନ୍ଦର ହୋଇଛନ୍ତି । କର୍ଣ୍ଣିକାର-କର୍ଣ୍ଣିକା-ଶୋଭା ଅନନ୍ୟ ଓ ଅମୂଲ୍ୟ । ଏ ସମସ୍ତ ଫୁଟା ଅଫୁଟା ଫୁଲ ତାରତର ହୋଇ କାହାର ମନ ହରୁନାହାନ୍ତି; ଏ ସକଳ କେଉଁ ବନ୍ଧାଣିର ଉଆଣ । ମଲ୍ଲୀ-କୁରୁବକାଦି ଦେହରେ ମଣ୍ଡନ କଲେ ଦେହ କି ସୁନ୍ଦର ନ ହେବ ! ଶ୍ରୀକୃଷ୍ଣ କେତେ ସ୍ନେହ ନ କରିବେ ? କାମିନୀଏ ଏହିପରି ବଗୃହ ପୁଷ୍ପସାର-ଆଭରଣରେ ଅଙ୍ଗଶୋଭା ବଢାଇ ସୁର--ନର--ଗନ୍ଧର୍ବ--କିନ୍ନର--ମନଲୋଭା ହେଲେ । ବଶୀନ୍ଦ୍ର ଶିବ ଦେଖିଲେ ଘଡ଼ଏ ଢକାଇବେ; କୁଞ୍ଜବିହାରୀଙ୍କ କଥା କଏ ପଚ୍ଛରେ ? କୁସୁମସୁବେଶ ହୋଇ କୃଷ୍ଣସୁଖଦାୟିନୀ ଗୋପିକା ବନବିହାର କରିବାକୁ ଲାଗିଲେ ।

ଏଣେ କଳାମେଘବର୍ଣ୍ଣ କୃଷ୍ଣ ଗୋପିକାମାନଙ୍କର ଅନ୍ତର-ଭାବରେ ମୁଗ୍ଧ ହୋଇ ହସ୍ତରେ କୁଳଛଡ଼ା ବଂଶୀ ଧରି ବୃନ୍ଦାବନରୁ ଧୀରେ ଧୀରେ ବାହାରହେଲେ । ସେ କରରେ ସେ କେଉଁ ଦୁର୍ଜ୍ଜନକୁ ମାରିନାହାନ୍ତି ଏବଂ କେଉଁ ସଜ୍ଜନକୁ ତାରିନାହାନ୍ତି ? ମୂର୍ତ୍ତି କୋଟି କାମପ୍ରାୟ ଅଭିରାମ ହୋଇଅଛି, କେକିପୁଚ୍ଛ-ଚୂଳ ବନମାଳୀ କାହ୍ନୁ ଭକ୍ତକାମଧେନୁ, ଦୁଃଖ-ପୀୟୂଷ-ଭାନୁ ଓ କାମ-କୁସୁମ-ଧନୁ ଅଟନ୍ତି । ଚନ୍ଦ୍ରକୁ ନକ୍ଷତ୍ରପନ୍ତି ପ୍ରାୟ ଗୋପ-

ତାଳା ଗୋପୀବଲ୍ଲଭଙ୍କୁ ବେଢ଼ିଛନ୍ତି । କେହି କେହି ବେଣୁଶୃଙ୍ଗ, କେହି କେହି ପଞ୍ଚବାହାଳୀ କୁତୂହଳରେ ବଜାଉଛନ୍ତି । କେହି କରରେ ଫୁଲଛଡ଼ି ବହି ଉଲ୍ଲାସରେ ରହି ରହି ଡାକି କଣ୍ଠିଲଗି ହୋଇ କି କି କଥା କହୁଅଛୁ, କେହି ଫୁଲଧନୁରେ ଫୁଲଶର ସନ୍ଧି କୁସୁମବୃଷ୍ଟି କରୁଅଛୁ । କେହି ବା ଫୁଲ-ଆଲଟରେ ବା କୁରୁବେଲ୍ଲି--ଚ୍ଚମରରେ ଶ୍ରୀଅଙ୍ଗଶ୍ରମ ହରୁଅଛୁ ।

ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ସରାଗ ସତୃଷ୍ଣ କଟାକ୍ଷରେ ଚାହିଁ କପଟ କୋପ କରି ପ୍ରଶ୍ନ କଲେ,—"ତୁମ୍ଭେମାନେ ଏ ଫୁଲପଦମାନ ତୋଳି ଆପଣା ଦେହରେ ବାଇଡଙ୍କ ଓ ବନ୍ଧୁଆଡ ବୋଲିଲ କାହିଁକି ? ଏ କି ଅବଗ୍ଣର କାର୍ଯ୍ୟ, ଅଳ୍ପ କାଳପରେ ଯେ ଏହା ଅତି ଦୁଃସହ ହେବ ! ଏପରି ଅଜ୍ଞାନ କାହିଁକି ହେଲ ? କୁଳ ଦେବତାଙ୍କୁ ଲଗି କରିବାପାଇଁ ମୁଁ କେତେ ଯତ୍ନ କରିଥିଲି .କେଉଁ ବଡ଼ଯଣରେ ତୁମ୍ଭେମାନେ ଜଣେ ଜଣେ କରି ଏହାକୁ ଏତେ ରଣଭଣ କଲ । କଥାଁ ମୋର ଅନ୍ତର୍ଦାହ କରାଇଲ ? କାହାର ଦେହ ଭଲ ଏହା ସହିବଟି ! ରହ ରହ ଆଜ କାହିଁ ଯିବ ଦେଖିବା ।" କୃଷ୍ଣ-କଥା ଶୁଣି ଜଣେ ଗୋପୀ କହିଲି; "ଆପଣ ଶୁଭରେ ଥିଲେ, କିଏ ଆମ୍ଭର କଣ କରିପାରେ ? ଯେ ଅମୃତ ଖାଇବାକୁ ପାଏ, ଗ୍ରର ବିଷ ତାହାର କଣ କରିବ ? ଏପରି କାହିଁକି ହେଉଛନ୍ତି ? କିଛି ଲାଞ୍ଛ ଦେବା, ଶାନ୍ତ ହୁଅନ୍ତୁ; ଭ୍ରୂକୁଟିଭଙ୍ଗି କରି ଆମ୍ଭମାନଙ୍କୁ ଅସ୍ଥିର କରନ୍ତୁନାହିଁ ।" କୃଷ୍ଣ କହିଲେ;—ମୁଁ କଦାପି ଶାନ୍ତ ହେବନାହିଁ, କଂସମାମୁ-ରାଣ ପକାଇ କହୁଛି, ଏକଥା ମୋର ପ୍ରମାଣ । ତୁମ୍ଭେମାନେ ଆଜ କାହିଁ ଯିବ । କାହାକୁ ହେଲେ ଟିକିଏ ତୁମ୍ଭେମାନେ ଡରିଲନାହିଁ, କି ଚକ୍ଷୁଲଜ୍ଜା କଲନାହିଁ !" କପଟ-କୃଷ୍ଣ-କଥାରେ ଅଧିକ ସାହସିନୀ ଓ ଅନୁରାଗିଣୀ ହୋଇ ବ୍ରଜତରୁଣୀମାନେ ଫୁଲ ମାଳେ ମାଳେ ନେଇ, "ହେ ବରେଣ୍ୟ ମାନବ-ମୂର୍ତ୍ତି ଭଗବାନ ! ଆମ୍ଭେମାନେ ବରଣ କରୁଛୁଁ ଓ ଅର୍ଚ୍ଚନ କରୁଅଛୁଁ, ଆପଣ ଆମ୍ଭମାନଙ୍କର ପ୍ରାଣ" ଏହା ଉଚ୍ଚାରଣ କରୁଁ କରୁଁ ଶ୍ରୀକୃଷ୍ଣଙ୍କ ଗଳ-ଦେଶରେ ଲମ୍ବାଇ ଦେଲେ ଏବଂ କରଯୁଗ ଶିରରେ ଲଗାଇ ନମସ୍କାର

କଲେ । ତତ୍ପରେ ସେ ପ୍ରେମ-ବିଗ୍ରହକୁ ରହି ରହି ଅନାଇଁ ଅନାଇଁ ଗୋକୁଳ ଆଡ଼େ ଅଗ୍ରସର ହେଲେ ।

ତେତେବେଳେ କମଳବନ୍ଧୁ କ୍ଳାନ୍ତ ହୋଇ ଅସ୍ତାଚଳରେ ଅଧିଷ୍ଠାନ କରିବା ମାନସରେ ସପ୍ତାଶ୍ୱରଶ୍ମି ସଂଯତ କରିଥିଲେ । ସେ କାଳ କୌମାର-ଯୌବନ-ସନ୍ଧିବେଳ ପରି ଲଜ୍ଜାବଳ ତୁଟାଇ ଭଗବାନ୍ ସଙ୍ଗପାଇଁ ଗୋପୀ ଭକ୍ତମନରେ ଚାଞ୍ଚଲ୍ୟ ଓ ଉଦ୍‌ବେଗ ଘଟାଇଲା । ନୟନାନନ୍ଦ କଳାକର-କଳା ପ୍ରକାଶି ଆସିଲା । କୁସୁମବିକାଶ-ବେଳ ଉପସ୍ଥିତ ହେବାକୁ ବହୁତ ଦୂର ନ ଥିଲା । ବିହଗମାନେ କୁତୂହଳୀ ହୋଇ କୋଳାହଳ କଲେ । କୋକ-ଶୋକ-କାଳ ମାଡ଼ି ଆସିଲା । ଅଙ୍ଗଶୋଭା କରି ଉଭା ହୋଇଥିବା ଅନୁରାଗ-ବତୀ ବାରବଧୂ ସଦୃଶ ନିଶାମୁଖ-ଜ୍ୟୋତି ସୁନ୍ଦର ଦିଶିଲା । ଦେବଆଳରେ କମ୍ବୁଘୋଷ ଶୁଭିଲା । ଗୋପାଳମାନେ ଧେନୁ ଦୋହନ କଲେ । ରବି-ଦୀପ ଲିଭିବାରୁ ଅନ୍ଧକାର କହୁଁ କହୁଁ ପୃଥିବୀକୁ ଅନ୍ଧ କଲା । କୃପଣର ଧନବ୍ୟୟ ପରି ଜନନେତ୍ର ଅନ୍ଧକାରରେ ପ୍ରାୟ କିଛି ଦେଖିପାରିଲା-ନାହିଁ । ଚୋରଙ୍କୁ ସୁଯୋଗ ମିଳିଲା ଓ ପେଚକର ସୁଖ ଜାତ ହେଲା । ନିଶାଚର ଓ ଦୁର୍ବୃତ୍ତ ଜୀବ ପ୍ରବଳ ହେଲେ । ଅନ୍ଧକାର କ୍ରମେ ବିସ୍ତୃତ ପ୍ରାୟ ସର୍ବବ୍ୟାପୀ ଓ ଅଚ୍ଛିଦ୍ର ନିବିଡ଼ ହୋଇ କାଳପରି ବିକରାଳ ହେଲା । ଏଣେ ଚନ୍ଦ୍ରମା ହରାଇବାପାଇଁ ତମକୁ ଗୋଡ଼ାଇଲେ, ନା, ଗ୍ରାସ କରିବା-ପାଇଁ ତମ ଚନ୍ଦ୍ରକୁ ଘଉଡ଼ାଇଲା ? କିଛିକାଳ ଉତ୍ତାରେ ଚନ୍ଦ୍ର ରଜା ପ୍ରାୟ ଉଦିତ ହୋଇ ଆସି ଲୋକମାନଙ୍କୁ ତୋଷ କଲେ, ଦୁଷ୍ଟ ତମ ଖସି ପଳାଇଲା; ଦୀନଜନର ଶୋକତାପ ଶାନ୍ତ ହେଲା ଏବଂ ଦସ୍ୟୁ, ଘାତୁକ, ବ୍ୟଭିଚାରୀ ପ୍ରଭୃତି ଅଧର୍ମଚାରୀଙ୍କର ଗତି ନିବର୍ତ୍ତିତ ହେଲା । କୃଷ୍ଣ-ହୃଦ-ୟରେ କୌସ୍ତୁଭତୁଲ୍ୟ ଶଶୀ କଳଙ୍କ-ବ୍ୟାଜରେ ଯାମିନୀ-କାମିନୀକୁ କୋଳରେ ଧରି ଗଗନରେ ଶୋଭା ପାଇଲେ । କୌମୁଦୀ-ଧବଳିତ ନଭ-ଚନ୍ଦ୍ରାତପରେ ଚନ୍ଦ୍ର ରଜତ-ଫଳକର ସୌନ୍ଦର୍ଯ୍ୟ ଧାରଣ କଲେ ଏବଂ ନକ୍ଷତ୍ରମାନେ ତହିଁରେ କ୍ଷୁଦ୍ର ଦର୍ପଣ ଖଞ୍ଜାହେଲା ପରି ଝଲମଲ ହୋଇ ନୟନପ୍ରୀତିକର ହେଲେ । ଚକୋରପନ୍ତି କଳାକର-ଶୋଭା ଦେଖି ମହାସୁଖୀ ହୋଇ ମନରୁ ଦୁଃଖ ଛାଡ଼ି କ୍ରୀଡ଼ା କଲେ ।

ହୃଦୟ-ଦର୍ପଣରେ ପ୍ରକୃତି-ପ୍ରତିବିମ୍ବ ପ୍ରତିଫଳିତ ହୋଇ ମନର ସୁଖଦୁଃଖକୁ ଶତଗୁଣ ବର୍ଦ୍ଧନ କରେ । ବସନ୍ତ କାଳର ବରଣୀୟ ସୌନ୍ଦର୍ଯ୍ୟ ବିରହ-ବେଦନା-ବୋଧକୁ ପ୍ରଖରତର କରିଦିଏ ବୋଲି ଭଗବାନ-ବିରହୀ ବିଚ୍ଛେଦ-ଯାତନାରେ ନିରତିଶୟ ଯନ୍ତ୍ରିତ ହୁଏ । ଏଣୁ ବିରହରେ ଜଳି କେହି ଗୋପୀ ଭକ୍ତ ଚନ୍ଦ୍ରକୁ ଅନାଇଲା ନାହିଁ । କୁସୁମ-ସମୟ ମହାସୁଖମୟ, ପୁଣି ବୃନ୍ଦସିତ, ତହିଁରେ ପୁଣି କୋକିଳ ସ୍ୱରିତ, ଏଥିରେ କେଉଁ ଭକ୍ତର ଚିତ୍ତ ସ୍ଥିର ହେବ ? ଜଣେ ଭକ୍ତ ଏକାନ୍ତରେ ବସି ତାହାର ପ୍ରାଣନାଥ ଭଗବାନଙ୍କୁ ଅଭିମାନରେ କହିଲା,—"ହେ ଭଗବାନ, ଆପଣ କେଡ଼େ ପାଷାଣ-ହୃଦୟ ଯେ, ଏ ବସନ୍ତକାଳରେ ମୋର ହୃଦୟକୁ ଉଚ୍ଛନ୍ନ କରି ଦୂରରେ ରହିଅଛନ୍ତି; ଆପଣ କଣ ଏ ଚନ୍ଦ୍ରକୁ ଦେଖୁନାହାନ୍ତି, କୋକିଳ-ଗାନ କି ଶୁଣୁନାହାନ୍ତି, ମନ୍ଦପବନ କି ଦେହରେ ଲାଗୁନାହିଁ, କଣ କୁସୁମବାସ-ନିଃଶ୍ୱାସ ନେଉନାହାନ୍ତି ? ଆପଣ ନିଜେ ଗୁଣବନ୍ତ ନୁହନ୍ତି, କି ସେ ଦେଶରେ ବସନ୍ତ ନାହିଁ ? ଏହାର ଉତ୍ତର ମୋତେ ଦିଅନ୍ତୁ ।" ଭକ୍ତର ପ୍ରାର୍ଥନା ଯେପରି ଭଗବାନଙ୍କୁ କହିଲା,—'ଆପଣ କାଳଯାକ ସ୍ନେହରେ ପାଳି କୁସୁମକାଳରେ ଭକ୍ତ-କୃତାନ୍ତ ହେଲେ ।' ପ୍ରାର୍ଥନା ଶୁଣି ଭଗବାନ ପ୍ରସନ୍ନମୁଖ ହେଲେ, ମାତ୍ର ଭକ୍ତର ଆର୍ତ୍ତିରେ ଅନ୍ତରରେ କୁଳିଶ ପ୍ରାୟ ଗଳିଥା ଯାଇତାର ବ୍ୟଥା ଅନୁଭବ କରି ବିଶ୍ୱାସକୁ ଡାକି ଯେପରି କହିଲେ,—'ବିଶ୍ୱାସ, ତୁ ଯାଇ ମୋର ଭକ୍ତକୁ ସାନ୍ତ୍ୱନା ଦେଇ କହ, ମୁଁ ତୋ ପଛେ ପଛେ ଗଲି ।'

ଅନନ୍ତର ରସିକଶେଖର ଶ୍ରୀକୃଷ୍ଣ ବସନ୍ତପଞ୍ଚମୀ ଦିନ ଅଙ୍ଗରେ କର୍ପୂରଚନ୍ଦନାଦି ବିଲେପନ କରି କମନୀୟ ଗନ୍ଧ ବାନ୍ଧି ଯେତେବେଳେ ଗୋପଦାଣ୍ଡରେ ବୁଲୁଥିଲେ ଏବଂ ମନ ଜାଣି ନାନା କୌତୁକ କଥା କହୁଥିଲେ, ସେତେବେଳେ ଗୋପୀମାନେ ଦୁଃଖ ଓ ଅଭିମାନ ଭୁଲିଯାଇ ନିର୍ମଳ ପୀୟୂଷ ଭୋଗ କରୁଥିଲେ ।

# ଚତୁର୍ଦ୍ଦଶ ପରିଚ୍ଛେଦ ।

ଭଗବାନଙ୍କର ଅଦର୍ଶନରେ କୁସୁମକାଳର ପ୍ରକୃତ ଶୋଭା କେଉଁ ଗୋପୀଭକ୍ତର କାଳପ୍ରାପ୍ତ ପ୍ରଶାନ୍ତ ହେଲା; ତାହାର ଅଙ୍ଗ ବିରହା-ନଳରେ ଦଗ୍ଧ ହେଲା ଏବଂ ଚିନ୍ତାରେ ଶରୀର ଶୁଷ୍କ ଓ କ୍ଷୀଣ ହେଲା । ଭକ୍ତ ଅତୀବ ଚିନ୍ତା-ଚିତାଗ୍ରସ୍ତ ହୋଇ କରକୁ କପୋଳରୁ ବାହାର କଲାନାହିଁ ଏବଂ ତାହାର ଆଉ ପୂଜାଦି କର୍ମାନୁଷ୍ଠାନରେ ତେତେ ସ୍ପୃହା ରହିଲାନାହିଁ । ଅନ୍ୟ ଜଣେ ପ୍ରାର୍ଥନାନ୍ତେ ଭଗବାନଙ୍କ ଦର୍ଶନ-ଆଶାରେ ଉଦ୍‌ଗ୍ରୀବ ହେଲା, ମାତ୍ର ଦର୍ଶନ ନପାଇ ନିରାଶ ଓ ବ୍ୟାକୁଳ ହେଲା । କେହି ଭକ୍ତ ଇନ୍ଦ୍ରିୟ-ନିଗ୍ରହ କରି ନିଜ ହୃଦୟ ଭଗବାନଙ୍କର ଉପଯୁକ୍ତ ପୀଠ ବୋଲି ମଣି ସ୍ୱସ୍ଥାନରେ ଆପଣା ସ୍ୱାମୀଙ୍କର ଅପେକ୍ଷାରେ ବସି ରହିଲା; ଭକ୍ତି ଓ ପ୍ରେମ ତାହାର ଏକମାତ୍ର ସମ୍ବଳ ଓ ସହାୟ । ଦର୍ଶନ ନପାଇ ଓ ମନୋବାଞ୍ଛା ପୂରଣ କରିନପାରି ଭଗବାନଙ୍କ ଉପରେ ସକରୁଣ କ୍ରୋଧ ପ୍ରକାଶକରି କେହି ଦୁଃଖରେ ବସିଗଲା, ଏହା ଦେଖି ଆଉ ଜଣେ ଭକ୍ତ କହିଲା,—'କି ମାନବକ୍ଷୀ ବଢ଼ିବ ବୋଲି କେଶବ-ଠାରେ ରୋଷକରି ନିଜେ ନିଜ ପରାଭବର କାରଣ ହେଉଛ ?' କେହି କୃଷ୍ଣବିରହରେ କୃଶପାଣ୍ଡୁର ହୋଇ ମଳିନ କେଶବାସରେ ଖିନ୍ନ ମନରେ କୁରଙ୍ଗୀ ପ୍ରାୟ ଝୁରିଲା । ଅନ୍ୟ ଜଣେ କୃଷ୍ଣଙ୍କ ଆଗମନ-କାଳକୁ ମନ ଦେଇ କମଳବର୍ଷି—ଦୃଷ୍ଟିରେ ଚାତକ ପ୍ରାୟ ଅନାଇ ରହିଲା, ମାତ୍ର ଆସିବାବେଳ ବଳିଯିବାରୁ ବିଗୃହ ଚଞ୍ଚଳ ତରଙ୍ଗ-ଗୃହାଣୀରେ ଇତସ୍ତତଃ ଗୃହିବାକୁ ଲାଗିଲା ।

ପୁଣି କେହି ଭାଗ୍ୟବାନ ଭକ୍ତ ଭଗବାନଙ୍କର ଦର୍ଶନ ଲାଭକରି ଆନନ୍ଦରେ ଗଦ୍‌ଗଦ ହୋଇ ତାହାଙ୍କୁ ପୁଷ୍ପ ଚନ୍ଦନରେ ପୂଜା କଲା ଏବଂ ଏକାଗ୍ରଚିତ୍ତରେ ଚିନ୍ତା କରୁଁ କରୁଁ ତନ୍ମୟ ହୋଇ ବାହାର-ବନ୍ଧନ ଛିନ୍ନକରି ଭଗବତ୍ ପ୍ରେମରେ ନିମଗ୍ନ ରହିଲା । କେହି ପ୍ରେମରେ

ବିଭୋର ହୋଇ ନିଜକୁ ଭୁଲିଗଲା ଏବଂ ମୋହ ଲଜ୍ଜାଦି ତ୍ୟାଗକରି କୃଷ୍ଣପ୍ରାପ୍ତିରେ ମନ ଦେଲା । ପୁଣି କେହି ଯୋଗବଳରେ କୃଷ୍ଣ ସଙ୍ଗ ଲଭି-କରି ଅନିର୍ବଚନୀୟ ସଙ୍ଗସୁଖ ଭୋଗକଲା; କୃଷ୍ଣ ସେ ଭକ୍ତକୁ କହିଲେ, 'ଏହିପରି ହୃଦୟରେ ମୁଁ କେଳି କରିବାପାଇଁ ନିରତ ବାଞ୍ଛା କରେଁ; ତୁମ୍ଭେ ଏ ହୃଦୟକୁ ଏହିପରି ଭାବରେ ମୋତେ ଦାନକର ।'

ଭଗବାନ ଶ୍ରୀକୃଷ୍ଣ ଏହିରୂପେ ବହୁରୂପ ଧରି କାହା ଭାଗ୍ୟରେ ପ୍ରାଙ୍ଗଣ-କୁସୁମ ଓ କାହାଭାଗ୍ୟରେ ଆକାଶ-କୁସୁମ ହୋଇ ସନ୍ଧ୍ୟାଠାରୁ ସକାଳ ପର୍ଯ୍ୟନ୍ତ ବାସନ୍ତୀ କ୍ରୀଡ଼ାମାନ କଲେ । ଭଗବାନ କେଉଁ ବିରହି-ଭକ୍ତକୁ ଉତ୍ତରୋତ୍ତର ବିରହାନଳରେ ଦଗ୍ଧ କରି ତାହାର ହୃଦୟକୁ ଶୁଦ୍ଧସୁବର୍ଣ୍ଣ ପ୍ରାୟ କରନ୍ତି; ପୁଣି କେଉଁ ଭକ୍ତର ଭାବରେ ଭୋଳ ହୋଇ ତାକୁ ସ୍ନେହରେ କୋଳରେ ଘେନନ୍ତି; କେଉଁ ଭକ୍ତଠାରେ ଦାସପ୍ରାୟ ଅନୁନୟବିନୟ କରି ତାହାର ସୁଖ ଓ ଆନନ୍ଦ ବର୍ଦ୍ଧନ କରନ୍ତି; କାହାକୁ ବା ସଖା ପ୍ରାୟ ହାତ ଧରି ସୁବାଟରେ ଚଳାଇ ନିଅନ୍ତି । ହୃଦୟ ସମ୍ପୂର୍ଣ୍ଣ ନିର୍ମଳ ନ ହେବାଯାଏ ଭଗବାନଙ୍କର ଆଧେୟ ମୂର୍ତ୍ତି ସେ ଆଧାରରେ ପ୍ରତିଫଳିତ ହୁଏନାହିଁ; ତେଣୁ କରୁଣାସାଗର ନିଜେ ମାୟାମଳ ଦୂରକରି ଓ ରିପୁବେଗ ସ୍ଥିରକରି ହୃଦୟର ବିମଳତ୍ୱ ଓ ସ୍ଥିରତ୍ୱ ଆଣିବାପାଇଁ ଭକ୍ତକୁ ଅସମ୍ଭବ ଯାତନା ମଧ୍ୟ-ଦେଇ ଘେନଯାନ୍ତି; ଅମଙ୍ଗଳାଧାରରେ ପାଦ ଦେଇ ଯିବାବେଳେ ଭକ୍ତ ଭାବୁଥାଏ, ମଙ୍ଗଳମୟଙ୍କ ବିଧାନରେ ଅମଙ୍ଗଳ କାହୁଁ ଆସିଲା; କିନ୍ତୁ ନରଚକ୍ଷୁରେ ଯାହା ଅମଙ୍ଗଳ, ତାହା କେବଳ ମଙ୍ଗଳର ନିଦାନ ଏବଂ ଯାହା ମୃତ୍ୟୁ ତାହା କେବଳ ଅମୃତର ସୋପାନ । ସସୀମ-ମାନବ ଅସୀମ ଅନନ୍ତଙ୍କ ବିଧାନର କି କଳନା କରିବ ?

କୁଳଟା ସ୍ତ୍ରୀ ବା ଲମ୍ପଟ ପୁରୁଷପରି କେତେ ଅହମିକାଗ୍ରସ୍ତ ନରନାରୀ ଦେବାଧିଦେବ ପ୍ରାଣନାଥ ଶ୍ରୀକୃଷ୍ଣଙ୍କୁ ଛାଡ଼ି ଐହିକ କାମନା ଚରିତାର୍ଥ ଓ ଇନ୍ଦ୍ରିୟ ପୁରୁଷାର୍ଥ ପାଇଁ ଇତର ଦେବଦେବୀଙ୍କ ଆରାଧନାରେ

ସନ୍ଧିଯାପନ କରୁଥିଲେ । ଉଷାଗମରେ ଜଣେ ଈଦୃଶ ପୂଜକ ପୁରୁଷ ଉପାସନା ଶେଷକରି କଜ୍ଜ୍ୱଳ, ଚନ୍ଦନ, ସିନ୍ଦୂରାଦି ତତା ଘେନ ଯାଉଥିବାର ଦେଖି ଜଣେ ଶ୍ରୀକୃଷ୍ଣଦାସାନୁଦାସ କରତାଳ ଦେଇ ହସି ହସି ପଚାରିଲେ,—'ରେ ଶଠ, ତୋର ଆକୃତି ଯେ ବରବେଶ ପରି ଦିଶୁଛି; କାଲଗତରେ କଣ ବିବାହ କରିବୁ ? ଏପରି ହେବ ବୋଲିତ କାହାରି ମନରେ ନଥିଲା !' ପୁଣି ଗୋଟିଏ ଦର୍ପଣ-ଆଗରେ ଧରି ସେ କହିଲେ,—'ଏଥିରେ ଦେଖ, ଦେହ କପରି ଚିତ୍ର-ବିଚିତ୍ର ହୋଇଛି; ଏ ରୂପ ଦେଖି ମୋ ଆଖି ସଫଳ ହେଲା, ତୋର ସଖୀ ଅର୍ଥାତ୍ ଯାହାକୁ ପୂଜା କରୁଛୁ, ସେ ଏ ରୂପକୁ ଧାପ ଦେଇ ବନ୍ଦାପନା କରୁ ।' ଏହିପରି କହୁଁ କହୁଁ ତାହାଙ୍କର ଗୁରୁ କୃଷ୍ଣଭକ୍ତ ସେଠାରେ ଆସି ମିଳିଲେ । ସେ ଜଣେ ମହା ପ୍ରେମିକ ଓ ଭକ୍ତ-ପଣ୍ଡିତ; ଏହି ଇତର ଦେବଦେବୀ-ପୂଜକର ରୂପ ଦେଖି ସେ କ୍ରୁଦ୍ଧ ଓ ବିଷଣ୍ଣ ହେଲେ, ମାତ୍ର ସୁଶିକ୍ଷା ଦେବା ଇଚ୍ଛାରେ ଏହିରୂପ ସରସ ତୀବ୍ର ବାକ୍ୟ ପ୍ରୟୋଗ କଲେ,—'ତୋର ଦେହ କେତେ ବର୍ଣ୍ଣ-ଚନ୍ଦ୍ରରେ ମଣ୍ଡି-ହୋଇଅଛି, କୃଷ୍ଣେତର ଦେବଦେବୀର ଆରାଧନାରୂପ ଦୁଷ୍ଟ କଥା ଓ କଳୁଷିତ କାର୍ଯ୍ୟକୁ ଭୂଷଣ କରି ତୁ କି ଲଜ୍ଜା ପାଉନାହୁଁ ? କାକ-ବେଶୀ କାକକୁ ଡରି ଲଜ୍ଜିତ ପ୍ରାୟ ହୋଇ ତରୁ-କୋଟରେ ପଶିବା-ପାଇଁ ଧାଇଁଲା ପ୍ରାୟ ତୁ କୃଷ୍ଣଭକ୍ତ ଜନକୁ ଭୟକରି ଆକୁଳପ୍ରାଣରେ ଲୋକ-ଲୋଚନ-ଅଗୋଚରକୁ ପଳାଇବାପାଇଁ ଚେଷ୍ଟା କରୁଛୁ, ମାତ୍ର ପରୋକ୍ଷଭାବରେ ଯେଉଁ ଆରାଧନା ଶ୍ରମ ସ୍ୱୀକାର କରୁଛୁ, ତହିଁରେ କେଉଁ କାର୍ଯ୍ୟ ? ହେଉ, ଯା ଯା, ଯାହାର ଆରାଧନା କରୁଛୁ, ତାହାର ଆରାଧନା କର । ଏ ଉପାସନା ତୋର ଭୂଷଣ ନୁହେଁ, ବରଂ ଦୂଷଣ ଅଟେ, ଏହା ତୁ ଅବଶ୍ୟ ଦିନେ ବୁଝିପାରିବୁ ଏବଂ ତେତେ-ଯାଇ ଏ ବାହ୍ୟ କର୍ମକାଣ୍ଡ ବୃଥା ବୋଲି ତୋର ମନେ ହେବ ।' ଏ ଉପ-ଦେଶ କଥା ଶୁଣି କର୍ମଜାଲବଦ୍ଧ-ନର ସଙ୍କୋଚ-ପଙ୍କରେ ଲୁଟିଗଲା ।

ପୁଣି ଜଣେ ସ୍ତ୍ରୀ ଉପାସନା ସାରି ଦେବପୀଠରୁ ଫେରୁଥିଲା । ସମସ୍ତ ରାତି ଉଜାଗର ବଶତଃ ଅଙ୍ଗ କରମର୍ଦ୍ଦିତ ପଦ୍ମ ସମାନ ନୀରସ ହୋଇଥିଲା; କେଶ ଆଲୁଳାୟିତ ଥିଲା ଏବଂ କପାଳରୁ ସ୍ୱରୁଚନ୍ଦନ-ଟିକା କିଛି ଲିଭି ଯାଇଥିଲା, ଅଧର ଫିକା ଓ ନୟନ ନିସ୍ତେଜ ଦିଶୁଥିଲା ଏବଂ ବସନ-ପରିଧାନ ଶିଥିଳ ହୋଇଥିଲା; ଘୋର ଆରାଧନା-ଶ୍ରମଯୋଗୁଁ, କନକଲତା ପବନ-ସଞ୍ଚ ଲାଗିଲେ ଯେପରି ଚଳେ, ଗୃହ କଲାବେଳେ ଚରଣ ସ୍ଥିର ନହେଉଥିବାରୁ ସେ ସେହିପରି ଢଳି-ଢଳି ଚାଲିଥିଲା । ଏହି ସମୟରେ ଜଣେ କୃଷ୍ଣପ୍ରେମିକା ସଖୀ ତାହାକୁ ଦେଖି ପଚାରିଲା,— "କାଲି ରାତିରେ କେଉଁ ଦେବର ଆରାଧନାରେ ମାତିଥିଲୁ ? କି ଜନ୍ୟ କହୁନୁ ? ଜଣାଯାଉଛି, ତୁ ପରଜନ୍ୟ ପାଇ ବିଫଳମନୋରଥ ହୋଇ ଲଜ୍ଜା ମାତ୍ର ପାଇଛୁ । ତୋର ଚାଲିରୁ ଅନୁମାନ କରୁଛି, ଆରାଧନା-ଅତ୍ୟାଗ୍ରହରେ ତୋର ଅଙ୍ଗସ୍ୱାସ୍ଥ୍ୟର ଭଙ୍ଗ ହୋଇଅଛି, ତୁ ନକହି ପଛେ ମୁଁ ସବୁ ବୁଝିଗଲିଣି; କେହି ନ ଦେଖିଲେ ହେଁ ତୋହର ଆଖି ତୋ କାର୍ଯ୍ୟର ସାକ୍ଷୀ, କୃଷ୍ଣପୂଜା-କରୁ ବୋଲି ଯେ ଏତେ ବଡ଼ାଇ କରୁ, ଆଜି ସେ ବଡ଼ାଇ ଛଡ଼ାଇ ତୋର ଆଣି ଦେହନଲି; ଭଲ ଲୋ ଭଉଣୀ ! ତୋ ମନରେ ଏତେ କପଟ ଥାଏ ! ତୁ କହୁ ଏକ, କରୁ ଅନ୍ୟ । ଆଚ୍ଛା, ଶୈବ-ଗାଣପତ୍ୟ-ବୈଷ୍ଣବ-ଶାକ୍ତ-ତାନ୍ତ୍ରିକାଦି ଯେତେପ୍ରକାର ମତର ପୂଜା-ବିଧି ଅଛି, ସନ୍ଧ୍ୟାଠାରୁ ସକାଳପର୍ଯ୍ୟନ୍ତ କଣ ଏକ ଏକ କରି ସେ ସମସ୍ତ ପ୍ରକାର ମତରେ ତୋର ଆରାଧ୍ୟ ଦେବର ପୂଜା କରୁଥିଲୁ ? ହେଉ, ନିଶ୍ଚୟ ଦିନେ ଏକମାତ୍ର ଶ୍ରୀହରିଙ୍କର ଉପାସନା କରିବା-ପାଇଁ ଏହି ଦେବତାର ପୂଜା ତୋତେ ଶିକ୍ଷା ଦେବ; ତୋର ହୃଦୟ ଯେତେ ଉଚ୍ଚ ଓ ଉଦାର ହେବ, ଶ୍ରୀକୃଷ୍ଣ-ପ୍ରାପ୍ତି-ବାସନା ମନରେ ତେତେ ପ୍ରବଳ ହେବ ।"

ଏଣେ ରାତ୍ରି କ୍ରମେ ପାହାନ୍ତି ହେଲା; ଅବନୀ କୁକ୍କୁଟ-ଧ୍ୱନିରେ ପୂର୍ଣ୍ଣ ହେଲା; ପ୍ରାଣିମାନେ ଜାଗ୍ରତ ଓ ଚଞ୍ଚଳ ହେଲେ, କୋକିଳ-କଳ-ଡାକ ଚାରିଆଡ଼େ ଘନ ଘନ ଶୁଭିଲା, କୋକମିଥୁନ ମନରୁ ବିରହ-

ଦୁଃଖ ଦୂରକଲେ, ଦେବାଳୟରେ ଆଗନ୍ତିକ ଶଙ୍ଖଘଣ୍ଟାଦ ବାଜିଲା, ବ୍ରାହ୍ମଣମାନେ ସ୍ନାନକୁ ବାହାରିଲେ, ପୂର୍ବଦିଗ କୁଙ୍କୁମ ବର୍ଣ୍ଣରେ ରଞ୍ଜିତ ହେଲା, କୁସୁମଗନ୍ଧ ଘେନି ଗନ୍ଧବହ ଧୀରେ ଧୀରେ ପ୍ରବାହିତ ହେଲା, ଶୀତଳ ସମୀରରେ ହୃଦୟ ଶୀତଳ ହେଲା, ବିହଗମାନେ କଳକୂଜନ କଲେ, ରାତ୍ରିଚର ଦୁଷ୍ଟ ପ୍ରାଣିମାନେ କୁକର୍ମ୍ମ ଛାଡ଼ି ଗୁପ୍ତ ସ୍ଥାନମାନଙ୍କରେ ଲୁକ୍କାୟିତ ହେଲେ, କଣ୍ଟୂଆଳ ଓ ତସ୍କରଙ୍କ ପ୍ରଭାବ-ପ୍ରଭୃତ ହେଲା, କ୍ରମେ ଶଶିତାରକା ଅସ୍ତଦଶା ଲାଭକଲେ, କୁଳ-ପାଳିକା କୁଳବଧୂମାନେ ପ୍ରଭାତ-ପୂର୍ବରୁ ଶଯ୍ୟାତ୍ୟାଗ କରି ଗୃହକର୍ମରେ ନିଯୁକ୍ତ ହେଲେ, ଗୋଧନପାଳକମାନେ ଗୋଧନ ଦୋହନ କଲେ, ଦଧିମନ୍ଥନର ଆରମ୍ଭ ହେଲା ଏବଂ ଅଳଙ୍କାରମାନ ତାଳେ ତାଳେ ନାଚି ତାନେ ତାନେ ଶିଞ୍ଜିତଧ୍ୱନି କଲା, ସଜ୍ଜନମାନେ ଶଯ୍ୟନ ଛାଡ଼ି ପ୍ରଭାତ ଗାନକଲେ ଓ ମଙ୍ଗଳମୟ ଭଗବାନଙ୍କର ନାମ ସ୍ମରଣ କଲେ, ଶୁଆସାରୀ କେବଳ ରାଧାକୃଷ୍ଣ-ନାମ ଉଚ୍ଚରେ ପଢ଼ିବାକୁ ଲାଗିଲେ, ଦେଖୁଁ ଦେଖୁଁ ଦିନମଣି ଧରଣୀକୁ କନକ-ଆଲୋକ-ରଶ୍ମିରେ ରଞ୍ଜିତ କଲା, ତଡ଼ାଗରେ କୁମୁଦ ଶୋଇଲା ଓ କମଳ ହସିଲା, ଭ୍ରମରମାନେ କୁମୁଦ-କୋଷ ଛାଡ଼ି କମଳ-କୋଳରେ କେଳି କଲେ, କମଳନାଥ ପ୍ରାଚୀମୂଳ ଛାଡ଼ି ଅମର ପଥ ମଣ୍ଡିବାରୁ ସମସ୍ତେ ନିଜ ନିଜ ବ୍ୟାପାରରେ ଲାଗିଲେ, ବାଳକବାଳିକା ପାଠଶାଳାରେ ପୋଥି ଧରି କୃଷ୍ଣଚରିତ ଗାଇଲେ, କୃଷକ କ୍ଷେତ୍ରରେ କର୍ଷଣ କରୁଁ କରୁଁ କୃଷ୍ଣକଥାରେ ଧ୍ୟାନ ରଖି ଲଙ୍ଗଳିଆ ଗୀତ ଆନନ୍ଦରେ ଉଠାଇଲା, ଗୋପାଳମାନେ ଗୋରୁ ଚରିବାକୁ ଛାଡ଼ିଦେଇ ତରୁ-ତଳରେ ଦୋଳି ଖେଳୁଁ ଖେଳୁଁ ବା ଡ଼ାଳରେ ଡାଳମାଙ୍କୁଡ଼ି ଖେଳୁ ଖେଳୁ ବୃନ୍ଦାବନଲୀଳାରୁ ପଦେ ପଦେ ଗାଇବାକୁ ଲାଗିଲେ । ଶାଳରେ, ମେଳରେ ଓ ଏକୁଟିଆ ସ୍ଥଳରେ କର୍ମ କଲାବେଳେ କୃଷ୍ଣ-ଚରିତ-ଗୀତ ଏହିରୂପେ ଗୀତ ହେଲା, ଏବଂ ଭଗବାନ ଜଗନ୍ନାଥଙ୍କର କାଠିଲାଗି, ମାର୍ଜଣା, ଓ ମୁଖବେଶାଦି ପ୍ରାତଃକୃତ୍ୟ ଆରମ୍ଭ କରା ହେଲା ।

# ପଞ୍ଚଦଶ ପରିଚ୍ଛେଦ ।

---

କ୍ରମେ ମଧୁକାଳ ଶେଷ ହେବାରୁ ଗ୍ରୀଷ୍ମସମୟ ମାଡ଼ିଆସିଲା । କର-ମାଳି-କର ଅଗ୍ନି ପ୍ରାୟ ମହାପ୍ରଖର ହୋଇ, ସଂଗ୍ରାମ-ଭୂମିରେ ସମର-ଘୋଟକ ପରି ପଥିକ-ପାଦକୁ ଦଗ୍ଧଇଲା । ଶୂନ୍ୟଗର୍ଭ ବାତଚକ୍ର କୁଶଳ-ନର୍ତ୍ତକୀ ଭ୍ରମରୀ ତୁଲ୍ୟ ଭ୍ରମି ଭ୍ରମି ବୁଲିଲା । ଦୀନ କୁଟୁମ୍ବି-ଧନଜନ-ମନ-ପରି ସନ୍ତାପୀ ହେଲା । ମିଥ୍ୟା ମୃଗତୃଷ୍ଣା କୁରଙ୍ଗ-ନୟନ-ତରଙ୍ଗକୁ ବଳି ଗଲା ଦିଶିଲା । କେଉଁଠାରେ କେତକୀ ଫଟ୍‌ଫଟ୍ ଶବ୍ଦ କରି ଫୁଟିବାକୁ ଲାଗିଲା । ସୂର୍ଯ୍ୟକାନ୍ତ କୃପଣ ସାମନ୍ତସେବକ ସମ ତାପରେ ଜର୍ଜ୍ଜରିତ ହେଲା । ନଦୀଜଳ କୃଶ ହେଲା ଏବଂ ସରସୀମାନେ ସଲିଳ-ବାସହୀନ ହେଲେ । ଉତ୍ତରଙ୍ଗ-ଦେହ ପରି ମତ୍ସ୍ୟ-କଚ୍ଛପ-ମଣ୍ଡୂକମାନଙ୍କର ଶରୀର କ୍ଷୀଣ ଓ ଦୁର୍ବଳ ହେଲା । ଜଳ ନପାଇ କରିବର ମହାଗହନ ଆଶ୍ରୟ କଲା । ମହିଷ କର୍ଦ୍ଦମରେ ପଡ଼ି ଫେନ-ମୁଖରେ ରଡ଼ ଗ୍ରୁଡ଼ିଲା । ପକ୍ଷୀମାନେ ଯୋଗୀ ଧ୍ୟାନ କଲାପରି କୁଞ୍ଜଭିତରେ ନିଶ୍ଚଳ ମୌନବ୍ରତରେ ବସି-ରହିଲେ । ପ୍ରାଣରକ୍ଷାପାଇଁ ପ୍ରାଣ ପରକୁ ଦେଇ କୋକମୃଗ ନିର୍ଭୟରେ ସିଂହଚ୍ଛାୟାରେ ଶୋଇ ଧକେଇ ହେଲେ । କୁଣ୍ଡଳିକୁଳ ମଧ୍ୟ ଏ ଆତପ-ବିପତ୍ତିରେ କଳାପି-କଳାପତଳେ ଆଶ୍ରୟ ନେଲେ । ସମାନ ବିପଦରେ ସମଦୁଃଖୀ ହୋଇ ପ୍ରାଣିମାନେ ବୈରିଭାବ ତ୍ୟଜ ପରସ୍ପର ମିତ୍ର ହୁଅନ୍ତି, ଏବଂ ଗୁରୁବିପଦର ଅଧୀନ ହେଲେ, ଲଘୁ ବିପଦ ଓ କ୍ଷୁଦ୍ର ସଂକୀର୍ଣ୍ଣତା ଭୁଲିଯାନ୍ତି । ବସନ୍ତ ଯେଉଁ ବନଲତା ଶୋଭାକୁ ଏତେ ତୋଷ କରିଥିଲା, ତାହା ଏବେ କାହିଁ ଅନ୍ତର ହୋଇଗଲା । ଝିଙ୍କାରମାନେ କୁଞ୍ଜେ କୁଞ୍ଜେ ଝିଁ ଝିଁ କଲେ । ରାତ୍ରରେ ବନାଗ୍ନି ବନପର୍ବତରେ ମାଳମାଳ ହୋଇ ହସିଲା । ଅର୍କ,ନିବୃକ୍ଷ କୁସୁମ ମଣ୍ଡିତ ହେଲା; ପଥିକମାନେ ଗମନ କରୁଁ କରୁଁ ତାପ ହେତୁ ଶ୍ରାନ୍ତ ହୋଇ ବଟବୃକ୍ଷ-ତଳରେ ବସିଲେ । କୃପଣ ଧନ ସଞ୍ଚିଲା ପ୍ରାୟ ମଧୁମକ୍ଷିମାନେ ମଧୁ ସଞ୍ଚିଲେ । ମହାଦାନୀ ପ୍ରାୟ ଆମ୍ରପନସ-

ପାଦପ ମଧୁରସପୂର୍ଣ୍ଣ ପକ୍ୱଫଳ ଜଗଜ୍ଜନଙ୍କୁ ଦାନ କଲେ । କେହି ପୁଣ୍ୟାତ୍ମା ପୁରୁଷ ପବିତ୍ର ଜଳସତ୍ରମାନ ସ୍ଥାନେ ସ୍ଥାନେ ବ୍ରାହ୍ମଣ-କରରେ ଅର୍ପଣ କଲେ । ଯେଉଁମାନଙ୍କୁ ଈଶ୍ୱର ଅନୁଗ୍ରହ କରିଥିଲେ, ସେମାନେ କର୍ପୂରଚନ୍ଦନ ଅଙ୍ଗରେ ବୋଳିହୋଇ ଧାରାମଣ୍ଡିତ ଗୃହରେ ରହି ଗୀତ, ବାଦ୍ୟ, ବେଣୁ, ବୀଣା, ନାଟ ନୃତ୍ୟାଦିରେ ଦିନମାନ ହରିଲେ । କେହି କେହି ଚନ୍ଦନ ପିଚକାରୀ ମାରି ଆନନ୍ଦରେ କ୍ରୀଡ଼ାକଲେ । କେହି କେହି ନୌକା ବିହାର କଲେ । ସ୍ୱେଦଭୟରେ କାହାର କରତଳରୁ ତାଳବୃନ୍ତ ଅନ୍ତର ହେଉନାହିଁ । କେହି ପ୍ରଚଣ୍ଡମାର୍ତ୍ତଣ୍ଡ-ତେଜରେ ଲଣ୍ଡଭଣ୍ଡ ହୋଇ ହିତାହିତରେ ଜଳରେ ବୁଡ଼ିଲେ । କେହି କେହି ମହାବ୍ୟାକୁଳ ହୋଇ ଶୀତସ୍ଥଳ ଖୋଜିଲେ ଓ ଶୀତଳ ପବନ ଲୋଡ଼ିଲେ । ସଂକ୍ଷେପତଃ ଅଙ୍ଗ ଶୀତକର ଦ୍ରବ୍ୟ ବିନା ଅନ୍ୟ କୌଣସି ପଦାର୍ଥ ରୁଚିଲାନାହିଁ ।

ଗ୍ରୀଷ୍ମରେ ବ୍ୟାକୁଳ ହୋଇ ସକଳ ଗୋପାଙ୍ଗନା ଜଳକ୍ରୀଡ଼ା କରିବା-ପାଇଁ ଚଞ୍ଚଳ ହେଲେ । କେଳିକଳା-କୁଶଳା ସୁଶୀଳା ପ୍ରେମଶୀଳା ପ୍ରସନ୍ନବଦନା ଶ୍ରୀକୃଷ୍ଣଚନ୍ଦ୍ର-ସ୍ନେହଧେନା କୃଷ୍ଣମନମୀନ-ଆକର୍ଷ-ବଡ଼ଶୀ ବ୍ରଜବାଳାମାନେ ତରଙ୍ଗିଣୀ-ତରଣୀ ପରି ଧୀରେ ଧୀରେ ଗତ କଲାବେଳେ ଧରଣୀ-ସରଣୀ ଅତି ଶୋଭାବନ ହେଲା । କଙ୍କିଣୀ କଳରବ କଲା ଓ ବାଜେଣୀ ନୂପୁର ମଞ୍ଜୁଳ ଧ୍ୱନି କଲା । ପାଦପମାନେ କମଳ ବର୍ଷିଲା ପରି କଣକସ୍ଥ-ପନ୍ତ ବର୍ଷି ପଦପଦକେ ପଥକୁ ସୁଖମୟ କଲେ । ବ୍ରଜବାଳିକା-ମାନେ କାଳିନ୍ଦୀକୂଳରେ ପ୍ରବେଶକରି ଦେଖିଲେ, କାଳିନ୍ଦୀ ବକାରେ ବଳାକଙ୍କୁଳକୁ ନନ୍ଦାକରୁଛି; ତରଙ୍ଗ କୁରଙ୍ଗ-କଟାକ୍ଷପରି ଚଞ୍ଚଳ; ସଲିଳ-ରେଖା କବରୀ ପ୍ରାୟ କୁସୁମସଙ୍ଗରେ ମହାମନୋହର; କୋକ-ମିଥୁନ କାହିଁ ଏକାଠି ବସିଛନ୍ତି; କେଉଁଠି ବକମାନେ କଳେବର ସ୍ଥିର କରି ବ୍ରହ୍ମଧ୍ୟାନୀ ଯୋଗୀପରି ମୀନକୁ ଲକ୍ଷ୍ୟ କରିଛନ୍ତି । କମଳବଦନା ଜଳରେ ପଶିଲା ମାତ୍ରେ କମଳମାନେ ଚଞ୍ଚଳ ହେଲେ; କହ୍ଲାରକୁଦ-ଇତ୍ୟାଦି କେହି ନିଶ୍ଚଳ ହେଲେନାହିଁ; ଯେ ଯାହାକୁ ଗୁଣରେ ବଳିଥାଏ

ତାହାଙ୍କୁ ପାଶରେ ଦେଖିଲେ ସେ ଅଧୀର ଓ ଅସ୍ଥିର ହୁଏ; ସୁମୁଖ, ସୁନେତ୍ର ଓ ସୁନଖର ଶୋଭାସମ୍ପ ସୁନ୍ଦର ହୋଇ ନପାର 'ଲାଜ ପାଇବା-ଠାରୁ ମରିବା ଭଲ' ଭାବ ସମସ୍ତଙ୍କର ଶରୀର କମ୍ପିଲା; କଳହଂସପକ୍ତି ଗୋପୀଗମନଶୈଳୀଭଙ୍ଗୀ ଶ୍ରେୟ କରିଥିବାରୁ ମନରେ ଭୟକରି କୂଳପାଶରେ ରହିଲେନାହିଁ । ନୀଳମଣିମୟ ସ୍ଥଳରେ କନକଲତା ପବନରେ ଟଳମଳ ପ୍ରାୟ କଏ କାହାକୁ ପାଣିରେ ପୂରାଇ ମୁହଁକୁ ପାଣି ମାରି ପଳାଇଲା । କେହି ଜଳକରିଟ ପ୍ରାୟ ଜଳରେ ବୁଡ଼ିଲା, କାହିଁ ଗଲୁ ବୋଲି କହି କେହି ପାଣିରେ ପାଣି ବାହି ତାହାକୁ ଖୋଜିଲା; ଏହିପରି କିଛୁକାଳ କ୍ରୀଡ଼ାକଲା ପରେ ସକଳ ଗୋପୀ କମଳଦଳରେ ବାଲୁକାଶମ୍ଭୁ ସ୍ଥାପି କମଳ ତୋଳି ମହାଶମ୍ଭୁଶିରରେ ଚଢ଼ାଇଲେ ଏବଂ କରରେ କର ଦେଇ ଚକ୍ରବାଳ ହୋଇ ଲିଙ୍ଗରାଜ-ଚତୁର୍ଦ୍ଦିଗରେ ଭ୍ରମଣ କଲେ; ଅନନ୍ତର ମନେ ମନେ ନିଜ ନିଜ ଦୁଃଖ ଜଣାଇ ଅନ୍ତରରେ ଅଭୀଷ୍ଟ ବର କାମନା କଲେ; ଜଣେ କହିଲା, 'ହେ ଆଶୁତୋଷ, ଶ୍ରୀକୃଷ୍ଣଙ୍କୁ ଏହି ଅବସରରେ ଆମ୍ଭମାନଙ୍କ ପାଶକୁ ଆଣିଦେବେ କି ?'

ଏହିପରି କରୁଁ କରୁଁ ସର୍ବଜ୍ଞ ସଦାନନ୍ଦ ସଜଳ-ନୀରଦ-ଶ୍ୟାମ ଶ୍ରୀହରି ବୃନ୍ଦାବନରୁ ବାହାରି ବିଚାରକଲେ, 'ଗୋପିକାମାନେ କୂଳରେ ବସନ ରଖି ନିର୍ଲଜ୍ଜ ଭାବରେ ଯମୁନାରେ ଜଳକ୍ରୀଡ଼ା କରୁଛନ୍ତି । ସମସ୍ତଙ୍କର ବସନ ହରଣ କରି କଦମ୍ବଡାଳରେ ଦୋଳି କରି ବସି କୌତୁକ-ପଣ କରିବା ଏବଂ ଲୀଳାରେ ଲଜ୍ଜା ଛଡ଼ାଇ ଲବଙ୍ଗଲତା ଲଳନାଙ୍କ ଲୁକ୍କାୟିତ ଲାବଣ୍ୟମୟ ଭାବର ପ୍ରକଟ କରାଇବା ।' କେଶବ ଏହିରୂପ ଭାଷି ପବନକୁ ଡ଼ାକି ଆଜ୍ଞାଦେଲେ, 'ତୁମ୍ଭେ କେଳିକଦମ୍ବ ଉପରକୁ ଅମ୍ବରମାନ ଘେନି-ଆସ ।' କେଶବ-ଆଜ୍ଞାରେ ପବନ ବହି ଅମ୍ବରମାନ ଅମ୍ବରରେ ଉଡ଼ାଇ ବୃକ୍ଷରେ ଥୋଇଲା । ବଂଶୀବଦନାସ୍ୱା ବନମାଳୀ କଦମ୍ବ ଉପରେ ବସି ଅନ୍ତର ବାହାର ଚତୁର୍ଦ୍ଦିଗ ନିରୀକ୍ଷଣ କରି ମୁଗ୍ଧ ହେଲେ । ଗୋପିକା-ମାନେ ଜଳକ୍ରୀଡ଼ା ବଢ଼ାଇ କୂଳକୁ ଯାଇ ଦେଖିଲେ, କାହାରି ପିନ୍ଧିବା

ବସନ ନାହିଁ । କେହି ଚକିତ ହୋଇ ଚଞ୍ଚଳ କୁରଙ୍ଗୀ ପ୍ରାୟ ଚାହିଁଲା; କେହି କହିଲା, 'ବସନମାନ ଆମ୍ଭର ଜଳକ୍ରୀଡ଼ା-ସୁଖ ସହି ନପାରି କାହିଁ ଚାଲିଗଲାଣି ।' କିଏ କହିଲା, 'ଏପରି ଅବିଚାର କିଏ କଲା; କାହାକୁ ପଚାରିବା; ଏଠାକୁ ତ ଆଉ କେହି ଆସିନାହିଁ; କଣ ପବନ ଘେନିଗଲା ? ବା ନନ୍ଦସୁତ ହେବ ।' ଅନ୍ୟଜଣେ କହିଲା, 'ହଁ ହଁ, ମୋର ମନକୁ ଆଇଲା; ସେହି ଚୋର କରିଛି; ଏ ଆଉ କାହାରି କାମ ନୁହେଁ ।' ଏହିପରି କଥା ହେଉଁ ହେଉଁ ଜଣେ ଉପରକୁ ଅନାଇ ଦେଲା; ତହୁଁ ଗୋପୀଏ ଦେଖିଲେ, 'କହ୍ନାଇ କଦମ୍ବବୃକ୍ଷରେ ଦୋଳି କରି ବସିଛନ୍ତି; ଶରଚ୍ଚନ୍ଦ୍ର-ଜିଣି ମୁଖ, ଅଭିନବ-ଘନ ଅଙ୍ଗ, ପୀତବସନ ଓ ମୟୂରପୁଚ୍ଛ ବୃକ୍ଷକୁ ଉଜ୍ଜ୍ୱଳ କରିଅଛି ।' କୃଷ୍ଣଙ୍କୁ ଦେଖି ଲଜ୍ଜିତ ହୋଇ କଳହଂସୀ ପ୍ରାୟ ସମସ୍ତେ ପୁଣି ଜଳରେ ପଶିଲେ ଏବଂ କୁହାକୁହି ହେଲେ, 'ସଙ୍ଗାତ, ନନ୍ଦସୁତ ଆଜି ତ ଆମ୍ଭଙ୍କୁ କ୍ରୀଡ଼ାପୁତ୍ତଳୀ ପରି କଲେ ।' ଉପାୟ ନାହିଁ ଜାଣି ହାତ ଟେକି ଡାକି ବୋଇଲେ, 'ବସନ ନେଇ ଏତେ ହଟ ଲଗାଇଛନ୍ତି କାହିଁକି ? ବିନତି କରୁଛୁଁ, ଏବେ ଦୟା କରି ଆମ୍ଭମାନଙ୍କ ବସନମାନ ଦିଅନ୍ତୁ ।' ଏ ବିନୟାବନତ ବଚନରେ ବିଗଳିତ ନହୋଇ ବ୍ରଜବନ୍ଧୁ ବକ୍ରକଣ୍ଠରେ ବୋଇଲେ, 'ତୁମ୍ଭମାନଙ୍କର ଏ କି ମନଫୁଲାପଣ; ଜଳକ୍ରୀଡ଼ା କରି ପବିତ୍ର ଯମୁନାଜଳକୁ ଗୋଳିଆ କଲ; ଏତେ ଅହଙ୍କାର ଯେ, ମୋତେ ପୁଣି ଚୋର ଦୋଷ ଦେଲ; ଆଜି ତୁମ୍ଭର ଆମ୍ଭର ନ୍ୟାୟ କରିବା; କଥା କଂସଯାଏ ଯାଉ; କଂସପରା ମାମୁ ଥାଉଁ ଥାଉଁ ମୋତେ ଚୋର ବୋଲି କହିଲ; ତୁମ୍ଭର ଏତେ ବଡ଼ାଇ !' କୃଷ୍ଣକଥାରେ ଛଳ ନ କରି କେହି ଗୋପୀ କହିଲା,—'ଆମ୍ଭେମାନେ ସବୁ ଜାଣୁ, ସେଥି-ପାଇଁ ତ କଅଁଳା ପୁଅ ଦିନରୁ ଆମ୍ଭମାନଙ୍କ ଘରେ ସର-ଲବଣୀ ରହେ-ନାହିଁ; କେଉଁ ଅରଣ୍ୟରେ କେଉଁ ଗୋପୀଠାରେ ଡକାଇତପଣ ନ ହୋଇଛି ? ଆଜିପର୍ଯ୍ୟନ୍ତ ପିନ୍ଧିଲା ବସନର ହରଣ ହୋଇନଥିଲା; ହେ କୃଷ୍ଣ, ଏବେ ଭଲ ଏକ ଉପାୟ ବାହାର କଲେ, ସ୍ନାନଠାଇଁରେ ଯଦି ଚୋରଭୟ ହେଲା, ତେବେ ଗୋପରେ ଆଉ କିପରି ରହିବୁଁ ?'

ଗ୍ରଜବିନୋଦ ବନମାଳୀ ସହାସ୍ୟବଦନରେ କହିଲେ; 'ତୁମ୍ଭର ବସନମାନ ପବନ ଆଣି କଦମ୍ବଉପରେ ପକାଇଲା;ଆମ୍ଭେ ଆମ୍ଭ ସୁଖରେ ବସିଛୁଁ; ଆମ୍ଭଙ୍କୁ କାହିଁକି ଦୋଷ ଦେଉଛ ? ତୁମ୍ଭେମାନେ ଯେ ଯାହାର ବସନ ଆସି ଚହ୍ନିନଅ ।" ଗୋପୀ ତର୍କ କରି କହିଲା, "ଯମ ନିଏ, ନଛ ଦିଏ" ପରି କଥା ହେଉଛି, ସମସ୍ତ ତ ଆପଣଙ୍କର ଇଚ୍ଛା; ପବନର କପାଁ ଦୋଷ ହେବ ? ଅନନ୍ତର ଶ୍ରୀହରି-ଆଦେଶକୁ ଶିରୋଧାର୍ଯ୍ୟ କରି ଗୋପିକାମାନେ ଅନାବୃତ୍ତ ହୋଇ ଜଳରୁ ବାହାରିଲେ ଏବଂ ଅବାଙ୍ଗମାନ ବାଙ୍କକରି ସଲଜ୍ଜ ଅବନତ ବଦନରେ କଦମ୍ବତଳରେ ଯାଇ ଛିଡ଼ାହେଲେ । କନକକାନ୍ତି କନ୍ୟାମାନେ କନ୍ୟାସ୍ତମ୍ଭ ପ୍ରାପ୍ତ ଜଳାର୍ଦ୍ର ବସନରେ ଶୋଭା ପାଇଲେ । କୃଷ୍ଣ କହିଲେ, 'ମୋର ବୋଲ କର; ଯେଉଁ ଅପରାଧ କଲ, ସେଥିଲାଗି ଶିରରେ କର ଦେଇ ଜଳଦେବତାଙ୍କୁ ନମସ୍କାର କର ।' ତହୁଁ ଗୋପୀମାନେ କହିଲେ,—' ଆମ୍ଭେମାନେ ଦେବତାଙ୍କୁ କି . ଜାଣୁ, ମନବଚନକର୍ତ୍ତବ୍ୟରେ ଆମ୍ଭେମାନେ କେବଳ ଏକ ଜଗତ୍କର୍ତ୍ତାଙ୍କୁ ଜାଣୁଁ, ଅତଏବ ହେ ଭଗବାନ କୃଷ୍ଣ, ଆପଣଙ୍କୁ ହିଁ ନମସ୍କାର' ଏତେକ କହି ସେମାନେ କରଯୁଗ ତୋଳି ଶିର ନଇଁ ଶ୍ରୀକୃଷ୍ଣଙ୍କୁ ନମସ୍କାର କଲେ । ଭଗବାନ ଭକ୍ତଙ୍କର ଲଜ୍ଜାତ୍ୟାଗ-ଭାବ ଦେଖି ହର୍ଷରେ ଅସ୍ଥିର ହେଲେ ଏବଂ କୌତୁକରେ କହିଲେ—'ବାଲୁକାଶମ୍ଭୁଶିରରେ କମଳ ଚଢ଼ାଇ ମନେ ମନେ କି ବର ମାଗିଥିଲ ଯେ, ଆଜି ଏତେ ହଟହଟା ହେଲ ? ବସନ ଗ୍ଭେରି ହୋଇଗଲା ।' ଏହିପରି କହି ଶ୍ରୀରଙ୍ଗ ସଦୟ ହୋଇ ସମସ୍ତଙ୍କ ଯେ ଯାହାର ବସନ ଦେଲେ । ଗୋପୀଙ୍କର ବଦନମଣ୍ଡଳ କନକ-ଦର୍ପଣ ପରି ଉଜ୍ଜ୍ୱଳ ହୋଇ ପ୍ରସନ୍ନ ହେଲା । ତତ୍ପରେ ସେମାନେ ଆପଣା ଆପଣା ବାସ ପାଲଟି ଅବଗାହନ—କ୍ରିୟା ଶେଷ କଲେ ଏବଂ କୁରଙ୍ଗ-ତରଙ୍ଗନୟନ ନଗ୍ଭଇ ହର୍ଷରେ ଗୋପକୁ ଗମନ କଲେ ।

କାଳିନ୍ଦୀକୂଳୀୟ୍ୟାଂ କଦମ୍ବମୂଳୀୟ୍ୟ କଜ୍ଜ୍ୱଳ-କାଳୀୟ୍ୟ କାଇଞ୍ଚମାଳୀୟ୍ୟ ପୀତଦୁକୂଳୀୟ୍ୟ ମଣିମକରକୁଣ୍ଡଳୀୟ୍ୟ କେକପୁଚ୍ଛଗ୍ଭରୁଚୂଳୀୟ୍ୟ କୁଟିଳମାଳ-

ଅଳକାବଳୀସ୍ନୁ ସରଳବଣୀ-କବଳୀସ୍ନୁ ବ୍ରଜସୁତ-ସଙ୍ଗମେଳୀସ୍ନୁ ମୋହନ-ମୂରଲୀସ୍ନୁ ଭଗବାନ ଶ୍ରୀକୃଷ୍ଣ କଦମ୍ବବୃକ୍ଷରୁ ଓହ୍ଲାଇ ଯେଉଁ ତ୍ରିଭଙ୍ଗ ନଟବର-ବେଶରେ ଉଭା ହେଲେ, ସେହି ସର୍ବାଶୁଭଦରୂପ ସଜ୍ଜନମାନଙ୍କର ସମ୍ବଳ ହେଉ ।

---

## ଷୋଡଶ ପରିଚ୍ଛେଦ ।

କ୍ରମେ ନିଦାଘ କାଳ ଶେଷ ହେଲା ଏବଂ ବର୍ଷା ପ୍ରବେଶ କଲା । ଏକାଳର କାଳ-କବଳ କାଳିକା ଆକାଶରେ ଉଦିତ ହୋଇ ନିବିଡ଼ ନିର୍ଘୋଷ କଲା । ଦିବାନିଶି ବଉଦ ଧାଇଁଲା ଏବଂ ରଜନିର ପ୍ରବଳ ଅନ୍ଧକାରରେ ଦିଗ ଦେଖାହେଲାନାହିଁ । ବିଦ୍ୟୁତ୍ ଘନଘନ ଘନ-କୋଳରେ ଚମକିଲା । ମେଘ କେତେବେଳେ ତର୍ଜନ ଗର୍ଜନ ସହ ବହୁ ଆଡ଼ମ୍ବରରେ ଉଠାଇ ଶେଷରେ ବିନ୍ଦୁପାତ ନକରି ପବନରେ ଉଡ଼ିଗଲା, କେତେବେଳେ ବା ବଡ଼ ବଡ଼ ଟୋପା ପକାଇଁ ପକାଇଁ ସରୁ ଧାରରେ ଭଲ ଅସରାଏ ଢାଳିଦେଇ ଧରା-ଧୂଳି ମାରିଦେଲା । ବହୁ ଆଡ଼ମ୍ବରରେ ଲଘୁବୃଷ୍ଟି ଘଟେ । 'ଖଣ୍ଡଲଗାଣ' ପରେ ଦେଖୁଁ ଦେଖୁଁ 'ସର୍ବଜ ଲଗାଣ'ରେ ଅବନୀ ସର୍ବଜ ଜଳପୂର୍ଣ୍ଣ ହେବାରୁ କୃଷିକାରମାନେ ମନଖୁସିରେ କୃଷରେ ଲାଗିଲେ । କେଦାରମାନ ଅଶେଷ ପ୍ରକାର ଶୀତରେ ପୂର୍ଣ୍ଣ ହେଲା । ନଦୀ ପ୍ରବଳ ହୋଇ କୁଳଟା ପ୍ରାୟ କୂଳ ବୁଡାଇ ବଢ଼ିଲା ଏବଂ ଚଞ୍ଚଳ ହୋଇ କାହାକୁ ପାଶରେ ଥୋଇଦେଲାନାହିଁ । ଦୀର୍ଘିକା କୁଳବତୀ ପ୍ରାୟ କୂଳରକ୍ଷା କରି ସ୍ଥିରରହିଲା । କମଳବଂଶ ଜଳଗହ୍ୱଳରେ ବୁଡ଼ଯାଇ ନିର୍ବଂଶ ହେଲା । କୋକ ମିଥୁନ ଜଳାଧିକ୍ୟ ଦେଖି ଆନନ୍ଦିତ ହେଲେ ଏବଂ ହଂସମାନେ ମାନ-ସରକୁ ଗମନକଲେ । ମତ୍ସ୍ୟ କଚ୍ଛପ ମଣ୍ଡୂକ ମାନେ ସୁଖରେ ମତ୍ତ ହୋଇ ନାନାକ୍ରୀଡ଼ା ରଚିଲେ । କ୍ରୌଞ୍ଚସାରସ

ଓ ବଳାକା-ବଂଶର ଉଲ୍ଲାସ ବଢ଼ିଲା । ବନ-ଅନଳ ଲିଭିଲା ଓ ବନପର୍ବତ ଶ୍ୟାମସୁନ୍ଦର ହୋଇ ଜଗତ-ଜନ-ନୟନଲୋଭା ହେଲା । କଦମ୍ବ, ଯାଇ ମଲ୍ଲୀ, ମାଳତୀ, କେତକୀ, ଚମ୍ପା, ଗିରିମଲ୍ଲୀ, ଯୂଥୀ ପ୍ରଭୃତି ପ୍ରଫୁଲ୍ଲ-କୁସୁମ ମନୋହର ବେଶବାସ ଧାରଣ କରି ଭ୍ରମର-ଗୁଞ୍ଜନରେ ଧ୍ୱନିତ ହେଲା, କୁସୁମରୁ ସୁବାସ ନେଇ ମୃଦୁଳ ମନ୍ଦସମୀର ସର୍ବଦିଗକୁ ଗମନ କଲା. ଜଗତର ନିଦାଘତପ୍ତ ପ୍ରାଣ ଶୀତଳ ହେଲା, ମାତ୍ର ଜ୍ୱରରୋଗୀ ପକ୍ଷରେ ଜଳ ଯେପରି ଦୁଃଖଦାୟକ, ବରଷାକାଳ ପ୍ରେମିକ—ପ୍ରେମାନୁରାଗ-ମାତ୍ର ବୃଦ୍ଧିକର ତା ପକ୍ଷରେ ସେହିପରି କଷ୍ଟ-ପ୍ରଦ ହେଲା । ଅର୍ଜୁନ ବୃକ୍ଷରେ ମୟୂର ଓ କଣ୍ଠାସମାନେ ତାଣ୍ଡବନୃତ୍ୟ କଲେ । ଡାହୁକ ନିରନ୍ତର ମନଉଲ୍ଲାସରେ ଡାକିବାକୁ ଲାଗିଲା । ବେଳେ ବେଳେ ଆକାଶରୁ କୁଳିଶ ଘଡ଼ ଘଡ଼ ଶବ୍ଦରେ ପଡିଲା ଏବଂ ପର୍ବତରୁ ଖଣ୍ଡଶୈଳ ଝଡ଼ିଲା । ଚଢ଼କ ମାରିବ ବା ଆଖି ଝଲସି ଯିବ ବୋଲି ଡରି ସମସ୍ତେ ଆବାସସ୍ଥଳରେ ବୃଷ୍ଟିଆରମ୍ଭରେ ଆଶ୍ରୟ ନେଲେ । ଦିନେ ଦିନେ ଝଡ଼ବର୍ଷା ହୋଇ ଦୁର୍ଦ୍ଦିନ ହେବାରୁ ବେଳେ ବେଳେ ଦିବସରଜନୀ କଳି ହେଲାନାହିଁ ।

ଏହି ପ୍ରାବୃଃଋତୁରେ ଦିନେ ଜଣେ ବିଦେଶୀ ପଥରେ ଏକା ଗମନ କରି ବିଦେଶରୁ ଫେରୁଥିଲା । ବାହୁଡ଼ିବା କାଳରେ ସେ କେକି-କେକା ଶୁଣି ଚାଟକା ହେଲା, ମଣ୍ଡୂକଡ଼ାକ ଶୁଣି ଚମକି ପଡ଼ିଲା; ପୁଣି ମେଘ-ଦମକରେ ତାହାର ଝମକ ଆସିଲା; ଏମାନେ ଏକେ ଏକେ ତାହାର ହୃଦୟକୁ ଡ଼ାକା ପରେ ଡ଼ାକା କଲେ । "ମୁଁ କି କଳାହାଣ୍ଡିଆ ମେଘ ହାବୋଡ଼ରେ ପଡ଼ିଲି" ମନରେ ବିଚାରିକରି ସେ କାତର ଭାବରେ ଘନ ଘନ ନିଃଶ୍ୱାସ ଛାଡ଼ି ପ୍ରଖରଗତିରେ କଷ୍ଟରେ ଚାଲିଲା; ପଥିକ କେତେବେଳେ ସ୍ତବ୍ଧ, କେତେବେଳେ ଦୁଃଖିତ । ସେ କେତେବେଳେ ତା ଅସହାୟ ଭାବରେ ମୁରଲୀପାଣିଙ୍କୁ ଡାକିଲା । ଖରଗତି ଯୋଗୁଁ ଦଣ୍ଡକୁ ଦଣ୍ଡ ଦାଣ୍ଡରେ କଚାଡ଼ି ପଡ଼ିଲା । ଏପରି ଶୋଚନୀୟ ଅବସ୍ଥାସତ୍ତ୍ୱେ ବକ-ଦର୍ଶନ

ମେଘ ତଳେ ଉପରୋଧ ମାନିଲାନାହିଁ । ପଥିକ ବିବ୍ରତ ଏବେ କଣ କରନ୍ତି, ନା ଗମନ କରିପାରିଲେ, ନା କାହିଁ ରହିପାରିଲେ ! ବାସ-କନ୍ଦର କାହିଁ ଯେ, ସେ ସେଥିରେ ପଶି ରହନ୍ତି ? ମେଘ କଳିତ ଇନ୍ଦ୍ରକୋଦଣ୍ଡ ବାହାର କରି କରକା-ହିକୋଡ଼କାଣ୍ଡ ସନ୍ଧି ବିନ୍ଧିଲା । ସଲିଳମୟ ଝର ଆକାଶରୁ ବହି ପଡ଼ିଲା । କାଳକୁଣ୍ଡଳୀର ରସନାଗ୍ରଳନା ପ୍ରାୟ ବିଜୁଳୀ ମେଘଜାଙ୍ଗଳୀ ଦ୍ୱାରା ପ୍ରଚଣ୍ଡଭାବରେ ଚାଳିତ ହୋଇ ରସ-ବିଷ-ବୃଷ୍ଟିରେ ପଥିକକୁ ଭନ୍ତାଇ ଜାଳିଦେଲା । ମେଘ କୋଳରେ ବକ ଶବ୍ଦ ଶୁଣି ପଥିକ ମନେ କଲା, ଯେପରି ମେଘ ତାହାକୁ ଗ୍ରାସ କରିବାପାଇଁ ଗର୍ଜ୍ଜନ କରି ଦନ୍ତ ଦେଖାଇଲା । ଗୃହୁଁ ଗୃହୁଁ ଜଳଦ ରାହୁପ୍ରାୟ ସୂର୍ଯ୍ୟକୁ ଗିଳିଦେଲା ଦେଖି ସେ ଚିନ୍ତାଜଳରେ ବୁଡ଼ିଲା ଏବଂ ଜୀବନ-ଧନକୁ 'ହାହି ମଧୁସୂଦନ' କହି ଭଗବାନଙ୍କ ଚରଣରେ ସମର୍ପଣ କଲା । ମେଘ ଛାଡ଼ିଗଲା । ନଦୀ-ନିର୍ଝର ଝର୍ଝର-ଶବ୍ଦରେ ଝରିବାକୁ ଲାଗିଲା । ମହୀମଣ୍ଡଳ କର୍ଦ୍ଦମମୟ ହେଲା । ପଥିକ ଆଉ ଖରଗତିରେ ଚାଲିପାରିଲାନାହିଁ । ଚରଣ ଖସିଯିବାରୁ ପଥିକର ବାସ-ବେଶ ବିକୃତ ହେଲା ଏବଂ ଯେ ଦେଖିଲା ସେ ତାକୁ ହସିଲା । ଏହିରୂପ କଷ୍ଟରେ ଚାଲି ସେ ନଦୀ ତଟରେ ଯାଇ ଉପସ୍ଥିତ ହେଲା । ତରଣୀ ସେ ପାରିରେ ଥିବାର ଦେଖି ତାହାର ଚିନ୍ତା ବଢ଼ିଲା । ଏହି ସମୟରେ ନାବିକ-ନାରୀ ସେଠାରେ ଉପସ୍ଥିତ ହୋଇ କହିଲା,—"ହେ ବାଟୋଇ, ବର୍ତ୍ତମାନ ବେଳାରେ ପାରିହୋଇ ଯାଇଥାନ୍ତ, କିନ୍ତୁ ନାଉରି ତ ନାହାନ୍ତି, ଥିଲେ ବା କୌଣସି ଉପାୟ କରିଥାନ୍ତେ; ଦେଖୁଛ ତ ଅନ୍ଧାର ଘଡ଼ି ମାଡ଼ି ଆସୁଛି; ଏ ମେଘ ବରଷାରେ କପରି ବାହାରି ଆସିଲ; ନଗରଯାଏ ଫେରି ଯାଅ; ସ୍ତ୍ରୀ ପୁତ୍ର କନ୍ୟାଙ୍କୁ ଗୃହରେ ରଖି କାଳଯାକ ତ ବିଦେଶ କଲ, ଏବେ ଏତେ ବିଷଣ୍ଣ ହେଉଛ କାହିଁକି ?" ବିଦେଶୀ ନାଉରି-ନାରୀର କୋମଳ ବାଣୀ ଶୁଣି ଟିକଏ ସୁଖୀ ଓ ପ୍ରସନ୍ନ ହୋଇ ନଗରରେ ରାତ୍ରି କଟାଇଲା । ପ୍ରାତଃକାଳରେ ପ୍ରବାସୀ ନଦୀ ପାର ହୋଇ ଗୃହକୁ ଚାଲିଲା । ପ୍ରେମ-ତଟିନୀ ଜ୍ଞାନ-କମଳ ବୁଡ଼ାଇ ଓ ଧୈର୍ଯ୍ୟ-ତଟ ଭାଙ୍ଗି ସୁଖ-ସାଗରରେ ମିଶିବାପାଇଁ ଧାଇଁଲାପ୍ରାୟ ନଦୀ ସାଗର-ସଙ୍ଗମଆଶାରେ

ଧାଉଁଥିଲା । ବାଳ-ସୌରକର-ରଞ୍ଜିତ ସୁବର୍ଣ୍ଣ ଧରଣୀରେ ନବୀନ ଇନ୍ଦ୍ର-ଗୋପକଦମ୍ବ ପ୍ରକଟିତ ହୋଇ ମନୋହର ଦିଶୁଥିଲା । ବାହାର ଶୋଭା ଭିତରେ ନଥିଲେହେଁ ଫୁଲ୍ଲ କୁସୁମ ନୟନାନନ୍ଦ ହୋଇଥିଲା । କେକ-ଡାହୁକାଦି ପକ୍ଷି-ଡାକରେ ଗଗନ ପୂର୍ଣ୍ଣ ହୋଇଗଲା । ପୁଣି ମେଘୋଦୟ ହେଲା; କାଳିକା-କଳା-କଳେବର ନବଘନଶ୍ୟାମଙ୍କର ରୂପଶ୍ରୀ ଧାରଣ କଲା । ମଘବା-ଚାପ କେକିକଳାପରୂପରେ ଶ୍ରୀବୃନ୍ଦାବନ-ନଭରେ ଉଦିତ ହୋଇ ପଥିକର ଆନନ୍ଦ ବର୍ଦ୍ଧନ କଲା; ବିଜୁଳୀ ହରିତ ବାସ, ବକମଣ୍ଡଳୀ ମୁକୁତାମାଳ, ମଧୁର ଘୋଷ ମନ୍ଦମୁରଲୀ-ଧ୍ୱନିପରି ପ୍ରତୀୟମାନ ହେଲା । ତାହାର କରୁଣାମୃତ ବୃଷ୍ଟି ସକଳ ସୃଷ୍ଟି ରକ୍ଷା କରି ଭକ୍ତ-ଚାତକ-ଚିତ୍ତ ତୋଷ କଲା । ବିଦେଶୀ ଜନ ଏ ଶୋଭା ଦେଖି ଦେଖି ହର୍ଷରେ ଗୃହରେ ପ୍ରବେଶ କଲେ । ସ୍ୱାମିର ଦର୍ଶନରେ କୁଟିଳକେଶୀ କୁରଙ୍ଗଦୃଶୀ ପୀୟୂଷ-ହାସିନୀ କୁଳବତୀ ପତିବ୍ରତା ମନରୁ ସମସ୍ତ ଚିନ୍ତା ଛାଡ଼ି ସ୍ୱାମୀ-ସେବାରେ ନିଯୁକ୍ତ ହେଲା । ବିଦେଶୀ କହିଲା,-"କାଳୀ ଘଉଡ଼ା, ଯାମଳାର୍ଜୁନ-ଗଛ-ଉପୁଡ଼ା ଅଘାସୁର-ମସ୍ତକଫୋଡ଼ା ଶ୍ରୀକୃଷ୍ଣ ଏତେଦିନେ ଯାଇ ମୋତେ କରୁଣା କଲେ, ସେ ବିଚିତ୍ର-କର୍ମା ମହାପ୍ରଭୁଙ୍କ ମହିମା କେତେ କହିବି; ସେ କାହାକୁ କେଉଁ କଷ୍ଟରୁ ରଖିନାହାନ୍ତି, ଭକ୍ତପ୍ରିୟ କୃପାସାଗର କାହାରି ଠାରେ ନିର୍ଦ୍ଦୟ ନୁହନ୍ତି, କେଉଁ କଥାରେ କାହାକୁ ତାହାଙ୍କୁ ଲକ୍ଷ୍ୟ ଦେବି; କୃପାସରିତ ପତି କୃପାକଟାକ୍ଷରେ କୃପା ନ ଢାଳିଥିଲେ ମୋର ଗତି କଣ ହୋଇଥାନ୍ତା; ମୁଁ ନଦୀରେ ଭସି ଯାଇଥାନ୍ତି କି ମୋ ମଥାରେ ଚଡ଼କ ପଡିଥାନ୍ତା । ତୁମ୍ଭେ ଆଜି କାହା ପାଖରେ ବସିଥାନ୍ତ ?" ସ୍ୱାମିର ଅମଙ୍ଗଳସୂଚକ କଥା ଶୁଣି ସାଧ୍ୱୀ କ୍ରୋଧ-ଅଭିମାନରେ ମୁଖ ପୋତିଲା । ବିଦେଶୀ ସ୍ତ୍ରୀର ମନୋଭାବ ବୁଝି ଅନେକ ସ୍ନେହ ବଚନ କହି ତାହାକୁ ପ୍ରସନ୍ନ କଲା ଏବଂ କହିଲା "କୁଞ୍ଜବିହାରିଙ୍କ କୃପା ଲଭି ତୁମ୍ଭେ କିପାଇଁ ଶୋଚନା କରୁଅଛ ?" ଏହିରୂପେ ବିଦେଶିମାନେ ଓ ଅନ୍ୟାନ୍ୟ ଉତ୍ତମ ଜନମାନେ ଗୃହରେ ରହି ମହାସୁଖରେ ବର୍ଷାଋତୁ ଯାପନ କଲେ ।

ଭଗବାନ ଶ୍ରୀକୃଷ୍ଣ ଭକ୍ତ-ଗୋପିକାମାନଙ୍କୁ ଦିବସ ରଜନୀ ଦର୍ଶନ ଦେଇ ବର୍ଷାକାଳକୁ ସୁଖାନନ୍ଦ କଲେ ।

ହେ ସୁଜନମାନେ, ଏ କୃଷ୍ଣକଥା-ପୀୟୂଷ ସତତ ପାନ କର । କବି ଏ ପୀୟୂଷ ବାଣ୍ଟିବା ପାଇଁ ବହୁତ ଶ୍ରମସ୍ୱୀକାର କରିଛନ୍ତି । ଯେଉଁ କୁଟିଳ-ବୁଦ୍ଧି ଲୋକମାନେ ଶ୍ରୀକୃଷ୍ଣଙ୍କର ଏ ବୃନ୍ଦାବନ-ଲୀଳା ବର୍ଣ୍ଣନାକୁ ମନେମନେ ଆଦର ନକରନ୍ତି, ସେମାନଙ୍କର ଅସ୍ତିତ୍ୱ ଏ ସଂସାରରେ ବୃଥା । କୂଟ ବଚନ ପ୍ରୟୋଗ କଲେ କୌଣସି ଯଶ ହେବନାହିଁ; କେବଳ କୃଷ୍ଣଭକ୍ତ ଲୋକମାନଙ୍କ ମୁଖରେ ହୁତାଶନ ଲଗାଇବା ହେବ । ଯେପରି କୃପଣ ଚିତ୍ତ ଯେତେ ଅଦ୍ଭୁତ କଥା ଦେଖିଲେ ମଧ୍ୟ କୌଣସିଥିରେ ଚକିତ ହୁଏନାହିଁ, ଯେପରି ବାଳିଶ ମନ ଯେତେ ଗୀତ ଶୁଣିଲେ ମଧ୍ୟ କୌଣସି ପ୍ରକାରେ ଦ୍ରବେନାହିଁ, ସେହିପରି ସଂସାର-ହଳାହଳ-ଅନଳ-ସନ୍ତାପ ଯେତେ ଚେଷ୍ଟା କଲେ ସୁଦ୍ଧା କାହିଁରେ ବିନାଶପ୍ରାପ୍ତ ହୁଏନାହିଁ; ଏହି କାଳସର୍ପ-ବିଷର ଗଦ ଏକମାତ୍ର କୃଷ୍ଣନାମ । ନାସ୍ତିକଜନ କୃଷ୍ଣନାମକୁ ନିନ୍ଦାକଲେ ଭକ୍ତ ବିମନ ହୁଏ ନାହିଁ, କାରଣ ପର-ନିନ୍ଦାରେ ଧନ ନେବାପାଇଁ ବିଧି ତାହାକୁ ସୃଷ୍ଟି କରିଅଛି, ତାହାକୁ ଯେତେ କହିଲେ ଏକଥା ଅନ୍ୟଥା ହେବନାହିଁ; ଶାକର-ସଂଯୋଗ କଲେ ସୁଦ୍ଧା ନିମ୍ବ କେବେହେଁ ମଧୁର ହୁଏନାହିଁ: ଅଙ୍ଗାରକୁ ଦୁଧରେ ଧୋଇଲେ ମଧ୍ୟ ତାହା କେତେବେଳେ ଧଳା ଗୁଡ଼େନାହିଁ; କର୍ପୂରଗନ୍ଧ-ଚନ୍ଦନରେ ରସୁନଗନ୍ଧ ଛଡ଼ାଇ ହୁଏନାହିଁ; ତେବେ ଯେତେ ଉପାୟ କଲେ କୁବୁଦ୍ଧିଲୋକ କପରି ସୁବୁଦ୍ଧି ହେବ ? କିନ୍ତୁ ଧାତା ଯଦି ଏତେକ କରନ୍ତା, କସ୍ତୁରୀକୁ ଖଳଲୋକଙ୍କ ଜିହ୍ୱରେ ରଖନ୍ତା, ତେବେ ସେଗୁଡ଼ିକ ସମୂଳରେ ନଷ୍ଟ ହୁଅନ୍ତା, ତାହାହେଲେ ଖଳମାନେ କିଛି କହିପାରନ୍ତେନାହିଁ ଏବଂ ଉତ୍ତମ କଥାର କଦାପି ନିନ୍ଦା ହୁଅନ୍ତାନାହିଁ । କେହି କହନ୍ତି, ସର୍ପଠାରେ ବିଷ ଅଛି, କେହି କହନ୍ତି 'ଲେମ୍ବୁ-କର୍ପୂର-ପଇଡ-ସଙ୍ଗମ'ରେ ବିଷ ଅଛି, ଅନ୍ୟମାନେ କହନ୍ତି ଖଳର ରସନାପୃଷ୍ଠରେ ଓ ନାରୀର ନେତ୍ର-ପଟରେ ଉତ୍କଟତର ବିଷ ବିଦ୍ୟମାନ; କିନ୍ତୁ ଯେତେ ପ୍ରକାର ବିଷ ସଂସାର-

ଯାତ୍ରୀର ପଥରେ ପଡ଼ିଥାଉ ପଛକେ, ସେ ଯଦି ଶ୍ରୀକୃଷ୍ଣନାମାମୃତ ପାନ କରେ, ତେବେ ତାହାର କୌଣସି ଭୟ ରହେନାହିଁ, ସେ ବିଷ ଗ୍ରାସ କରି ଜୀର୍ଣ୍ଣ କରିପାରେ। କମଲଧର ଚଞ୍ଚଳାବର ଭକ୍ତଜନ-ସନ୍ତାପହର ମନ-ସ୍ତୃତକ-ସନ୍ତୋଷକର ଇଚ୍ଛାବିହାରୀ ହରି ନାମାମୃତ ଦାନ କରି ସକଳ ଲୋକ ରକ୍ଷାକରିଅଛନ୍ତି।

ହେ ଅନନ୍ତଗତି ଦାବାନଳଭକ୍ଷକ ଭକ୍ତତୋଷକ ଭୁବନାନନ୍ଦ ପାର୍ଥ-ବନ୍ଧୁ ଜଗନ୍ନାଥ ! ଆପଣ ଭକ୍ତଠାରେ ଏତେ ଛନ୍ଦ କାହିଁକି କରନ୍ତି ? ହେ ଆନନ୍ଦକନ୍ଦ, ଭକ୍ତଠାରେ ଚିନ୍ତାମଣିକୁ ଦେଇ ତାହାର ସମସ୍ତ ଆଣି ଭଙ୍ଗି-ପକାନ୍ତି କାହିଁକି ? ଏହା ପ୍ରଭୁଲକ୍ଷଣ ଠିକ ? ତାହାକୁ ଚରଣପଦ୍ମର କୁସୁମଲିଟ କଲେ ସେ ଭକ୍ତବାଟ ନ ଗ୍ରୁଢ଼ି ଆନନ୍ଦରେ ନାଟ କରନ୍ତା, ତାହା ନ କରି କାହିଁକି ତାହାକୁ ସଂସାରଲଟ ମଧ୍ୟରେ ଯନ୍ତ୍ରଣା ଦିଅନ୍ତି ? ଯୋଡ଼ା ପେଟ ଅନେକରୂପେ ନାଟ କରେ, ଏବଂ ଭକ୍ତ ସଂସାର-ସମୁଦ୍ରରେ ଜଳକରିଟ ପରି ହେଉଥାଏ। କେତେବେଳେ ମୂର୍ଖ ନାୟକର ଗୃଟ ହୋଇ ସେ ତୋଇଡରେ ବିଦେଶଯାତ୍ରା କରେ, କେବେ ବା ବଧିର ଖଟ ପରି ଅନ୍ୟମନସ୍କ ହୋ'ଇ ମୁଖକଥା କର୍ଣ୍ଣରେ ଶୁଣିପାରେନାହିଁ, ଏହିପରି ପେଟଦ୍ୱାରା ଅଦୃଶ୍ୟଭାବରେ ଚାଳିତ ହୋଇ ନଟପରି ସଂସାରରେ ନାଚୁଥାଏ, ଏବଂ ପଇଡ଼ଖୋଳା ମୁଠାରେ ଧରି ମାଙ୍କଡ଼ ଧାଇଁଲାପରି ସେ ଅସାର ପଦାର୍ଥ ଘେନ ସତତ ବିଚଳିତ ହେଉଥାଏ। ଏ ପ୍ରକାର ହୀନତା ଦୁଃଖ, କ୍ଷୋଭ, କାହିଁକି ଭକ୍ତଭାଗ୍ୟରେ ଘଟେ ?

ତହୁଁ ବଳି ଦୁଃଖ ପୁଣି ସହାନୁଭୂତିର ଅଭାବ। ଭକ୍ତ କୃଷ୍ଣନାମ-କୁସୁମରେ ଅତି ଯତ୍ନରେ ସୁଷମ ମାଳ ଗୁନ୍ଥେ, ମାତ୍ର କେହି ତାହା ଉପଯୁକ୍ତ ମୂଲ୍ୟରେ ମୂଲାଇ ନେଇପା'ରନ୍ତିନାହିଁ। ହୀନ ଭକ୍ତ ମଧ୍ୟ ମାଳାକାର ପରି ତାହା ନିଜେ ନ ପିନ୍ଧି ପର ପାଇଁ ରଚନା କରେ। ଯାହାର କର୍ମ ଅତି ଉତ୍ତମ, ସେହି ତାହା ଗ୍ରହଣ କରେ। କିନ୍ତୁ ସେ ମାଳାକୁ କଣ୍ଠରେ ଲମ୍ବାଇବା

ପାଇଁ ଯୋଗ୍ୟ ସଂଯମୀ ପ୍ରେମିକ ସଂସାରରେ କେତେଜଣ ଅଛନ୍ତି ? ଜଗତଯାକ ତ ପ୍ରାୟ ମୁଣ୍ଡିତମସ୍ତକ ଭଣ୍ଡଭକ୍ତ । କୃଷ୍ଣ ନାମରେ ଗୀତ ରଚନା କଲେ ତାହା ସେମାନଙ୍କର ମନକୁ ରୁଚେ ନାହିଁ । ସେମାନେ କର୍ଣ୍ଣରେ ଶୁଣି ତାହାକୁ ନୀରସ ମନେ କରନ୍ତି । ଭକ୍ତ ମୋହ-ମଦମତ୍ତ ଓ ଜ୍ଞାନୋପହତଚିତ୍ତ ହେଲେ,ତାହାର ରଚନା ରୁଚିକର ହୁଅନ୍ତା,ମାତ୍ର ଭକ୍ତଙ୍କ ସେପରି ହୋଇପାରେ ? କୃଷ୍ଣ ଗୀତ ଶୁଣି ସେ ଭଣ୍ଡଭକ୍ତମାନେ ଶିଶୁ, ପଶୁ ଓ ମହାପାପୀ ପରି ଯଥାକ୍ରମେ ଅବୋଧ, ତୁଷ୍ଣୀଭୂତ ଓ ମହାନ୍ଧ ହୁଅନ୍ତି । କେତେକ ଜଳ-ଉପଳପରି କେବଳ ଉପରେ ତନ୍ତିଲା ପ୍ରାୟ ଦିଶନ୍ତି କିନ୍ତୁ ସେମାନଙ୍କର ହୃଦୟ କଦାପି ଦ୍ରବେନାହିଁ । ସେମାନେ ଅଙ୍ଗରେ ଅନେକ ଛାପ ମାରି ପ୍ରତ୍ୟକ୍ଷ ଚିତ୍ରପଟ ପରି ଦିଶନ୍ତି, ଏବଂ ଭିତର ପାପ କାହାକୁ ଜାଣିବାକୁ ଦିଅନ୍ତି ନାହିଁ । ଏପରି ମୂର୍ଖମାନଙ୍କପାଇଁ ଗୀତ ରଚନା କରିବାଠାରୁ ବିପତ୍ତି-ଶଙ୍କା ଆଉ ନାହିଁ । ଏପରି କରିବା ଅପେକ୍ଷା ଗୁଡରେ କାତିମାରି ମରିବା ଭଲ ।



## ସପ୍ତଦଶ ପରିଚ୍ଛେଦ ।



ବର୍ଷାଅନ୍ତେ ଶରତ୍ ଆଗତ ହେଲା । ଜଳଧର ଜଳଦାନରେ କୃପଣ ହୋଇ ଶୁକ୍ଳ ଦିଶିଲା ଏବଂ କେବଳ ଗର୍ଜ୍ଜନ କରି ଜଳଦ ନହୋଇ ଅମ୍ବୁଦ ହେଲା । ଦିଙ୍ମଣ୍ଡଳ-ଧରିତ୍ରୀ-ନଭ ସୁନ୍ଦର ଦିଶିଲା । ଚନ୍ଦ୍ର-ସୂର୍ଯ୍ୟ ପ୍ରଭାବ ବିସ୍ତାର କଲେ । ନଦୀଜଳରୁ କଲୁଷ ଛୁଟିଗଲା । କମଳକୁମୁଦ ପ୍ରସ୍ଫୁଟିତ ହେଲା ଏବଂ କୋକହଂସସାରସ ଜଳରେ କେଳିକଲେ। ସଫରୀ ନେତ୍ର-ଛଟକ ପ୍ରାୟ ଅଙ୍ଗ ଦେଖାଇ ଜଳ ଉପରେ କ୍ରୀଡ଼ା କଲା । ମହୀଜମ୍ବାଳ ଶୁଷ୍କ ଓ କଠିନ ହେବାରୁ ପୁଳିନ-କୂଳ କମନୀୟ ହେଲା

ବାଟଘାଟ କର୍ଦ୍ଦମହୀନ ହୋଇ ସୁଗମ ହେଲା । କୃଷ୍ଣ ଅଙ୍ଗରେ ପୀତବାସ ପରି କେଦାରରେ ପକ୍ୱଶାଳୀ ଶୋଭା ପାଇଲା । କୃଷାଣୀ ଗୀତ ଗୁରୁ-ଆଡ଼େ ଶୁଭି ଜନମନରେ ଆନନ୍ଦ ଜନ୍ମାଇଲା । ଶ୍ୱେତଛତ୍ରାକୃତ ଶିଲନ୍ଧ୍ର-ପନ୍ତି ଫୁଟିବାକୁ ଲାଗିଲା । କାଶତଣ୍ଡି ଶ୍ୱେତଚାମର ପ୍ରାୟ ବାୟୁରେ ଚଳ ଚଳ ସଞ୍ଚାଳିତ ହେଲା । କୁସୁମବନ୍ତ ବଧୁଲି ରଙ୍ଗବସନର ଶୋଭା ଧାରଣ କଲା । କାନ୍ତାହୀନା କାନ୍ତା ପ୍ରାୟ କଳାପିକୁଳ ଅଙ୍ଗରୁ କଳାପ ପକାଇ କେକା ଛାଡ଼ି ମୌନବ୍ରତ ଅବଲମ୍ବନ କଲେ । ହଂସମାନେ ମାନସର ତ୍ୟାଗକଲେ । ଶୁକମାନେ କଣ୍ଠକୁ ତାର-ଗ୍ରାମ-ସ୍ୱରରେ ଯନ୍ତ୍ରିତ କରି ଶାଳୀଗୁଚ୍ଛ ମୁଖରେ ଧରି ଗଗନରେ ଉଡ୍ଡୀନ ହେଲେ । ବୃଷଭଗଣ ବଳୀୟାନ ଓ ଆନନ୍ଦମତ୍ତ ହୋଇ ଶାଳୀଶସ୍ୟ ଚୂର କଲେ । ଲୋଧ୍ରତରୁ ଲୋହିତ କୁସୁମବାସ ପରିଧାନ କଲା । ଅଗସ୍ତି-ଦ୍ରୁମରେ କୋରକିତ କୁସୁମମଞ୍ଜରୀ କଳାକର ଖଣ୍ଡସମ ସୌନ୍ଦର୍ଯ୍ୟ ବିକାଶ କଲା । ଦକ୍ଷିଣ-ଦିଗରେ ଅଗସ୍ତି ତାରା ପ୍ରକାଶିତ ହେଲା । ଶରତ୍ ଲକ୍ଷ୍ମୀଙ୍କର ଆଗମନରେ ଜଳରେ ସ୍ଥଳରେ ବନରେ ବୁଦାରେ ଅବର୍ଣ୍ଣନୀୟ ପ୍ରକୃତ ଶୋଭା ବିକଶି ଉଠିଲା; କହିଲେ ତାହା ପୋଥି ହେବ ମାତ୍ର ସରିବ ନାହିଁ ।

କମଳନେତ୍ର ଶ୍ରୀକୃଷ୍ଣ ଦିନେ ରାତ୍ରିରେ ଦେଖିଲେ, କୁମୁଦବନ୍ଧୁ ଗଗନରେ ପୂର୍ଣ୍ଣକଳାରେ ବିରାଜମାନ; ଦିଗନ୍ତବ୍ୟାପୀ ଧରାମଣ୍ଡଳ କୌମୁଦୀ-ଧବଳିତ ହୋଇ କର୍ପୂରମୋଦିତ ଦିଶିଲା ପ୍ରାୟ ପରମସୁନ୍ଦର ହୋଇଅଛି; ମନେ ହେଉଛି କ୍ଷିତି କ୍ଷୀରମଗ୍ନ ହେଲା । ଯାହାର ଯଶ ପ୍ରକାଶିତ ହୁଏ ସେ କେତେ ଲୋକର କେତେ ଶୁକ୍ଲତା ଲୁଚାଇଦିଏ । ଜଣେ ଯେତେ ଉଚ୍ଚ ଓ ମହତ୍ ବୋଧ ହେଉଥିଲେ ମଧ୍ୟ ସେ ଉଚ୍ଚତର ଓ ମହତ୍ତର ବ୍ୟକ୍ତି ସମକ୍ଷରେ ମ୍ଳାନପ୍ରଭ ହୁଏ ଏବଂ ତାହାର ସତ୍ତା ସୁଦ୍ଧା ଅନୁଭୂତ ହୁଏ-ନାହିଁ । ଚନ୍ଦ୍ରାଲୋକ ଭିନ୍ନ ଅନ୍ୟ ଶୁଭ୍ର ପଦାର୍ଥ ଅଛି କି ନାହିଁ ମନରେ ସନ୍ଦେହ ହେଉଛି । ହଂସମାନେ ପରସ୍ପର ଦେଖାଦେଖି ହୋଇ ନପାରି ମନଦୁଃଖରେ କଳରବ କରୁଛନ୍ତି । ହ୍ରଦସ୍ଥ ମୁକ୍ତାମାଳ ସୁଦ୍ଧା ଦେଖା

ହେଉନାହିଁ । ଚନ୍ଦ୍ରର ଉଜ୍ଜ୍ୱଳିତ ଯୋଗୁଁ ଗତକାଳରେ ଗ୍ରହ୍ୟାପାତ କେଉଁଠାରେ ହେଉଛି ଜଣା ଯାଉନାହିଁ । କୌମୁଦୀ-ଲେପଧବଳ ପୁର ଦୂରରୁ ଚିହ୍ନି ହେଉନାହିଁ । କୁଞ୍ଜର ନଜର ବିଶାଳ ଧବଳ ଦଶନ ନ ଦେଖି ଏଣେ ତେଣେ ଆପଣା ଦନ୍ତ ଖୋଜୁଅଛି ।

ଏ ଶୋଭା ଦର୍ଶନରେ ଶ୍ରୀହରି ମୁରଲୀପାଣି ମୁଗ୍ଧ ହୋଇ ରାସ କରିବାକୁ ସ୍ଥିର କଲେ । ତେଣୁ ବେଶବିନ୍ୟାସ କରି କଦମ୍ବମୂଳରେ ତ୍ରିଭଙ୍ଗ ଭଙ୍ଗୀରେ ଉଭା ହୋଇ ନଟବର ବେଣୁଧରି ଧୀରେ ଧୀରେ ବଜାଇବାକୁ ଲାଗିଲେ । ଈଶବାଣୀ ଅନ୍ତରେନ୍ଦ୍ରିୟର ବିଷୟ; ସାରା ବିଶ୍ୱରେ ଓ ମାନବ ପ୍ରାଣରେ ଯେଉଁ ପରମଧ୍ୱନି ଅତି ଗୋପନରେ ଅହରହଃ ଧ୍ୱନିତ ହେଉଅଛି, ଅନ୍ତର୍ମୁଖୀ ଭକ୍ତ ଭିନ୍ନ ଅନ୍ୟ କିଏ ତାହା ଶ୍ରବଣ କରିପାରେ ? ତାହା ଶ୍ରବଣ କରିପାରିଲେ ଭକ୍ତ ଆତ୍ମଜ୍ଞାନ ହରାଇ ଅନାତ୍ମବିତ୍ ଓ ପାଗଳ ହୋଇଉଠେ; ତାହାର ମାୟାବନ୍ଧନ ଶିଥିଳ ହୋଇ ଊର୍ଣ୍ଣନାଭ-ଜାଲସମ ଛିନ୍ନଭିନ୍ନ ହୋଇଯାଏ; ମୋହକୁଜ୍ଝଟି ଜ୍ଞାନସୂର୍ଯ୍ୟୋଦୟରେ କୁଆଡ଼େ ଉଭେଇଯାଏ; ଏବଂ ଲଜ୍ଜାଶିଶିର କ୍ଷଣକେ ମିଳାଇଯାଏ । ଶ୍ରୀକୃଷ୍ଣଙ୍କର ମୁକ୍ତ-ମୁରଲୀଧ୍ୱନି କେବଳ ଗୋପିକାଭକ୍ତମାନେ ଶୁଣିପାରିଲେ, ଶୁଣି ଉନ୍ମତ୍ତ ଓ ଚଞ୍ଚଳ ହେଲେ । ଫୁଙ୍କିଦେଲେ ଯେପରି କାଷ୍ଠାବୃତ ଅଗ୍ନି କଞ୍ଚା ନମାନି କାଷ୍ଠକୁ ଜାଳି ସବେଗେ ଊର୍ଦ୍ଧ୍ୱକୁ ଗମନ କରେ, ସେହିପରି ଗୋପୀମାନେ ମୁରଲୀଧ୍ୱନି ଶୁଣି ମୋହ ଲଜ୍ଜାଦିରେ ଜଳାଞ୍ଜଳି ଦେଇ ଖର ଗତିରେ କୃଷ୍ଣପାଶକୁ ଅସମ୍ଭାଳ ହୋଇ ଧାଇଁଲେ ।

ଭଗବତ୍ ପ୍ରେମିକ ସଂସାର-ଚକ୍ଷୁରେ ବଡ଼ ଅଦ୍ଭୁତ ଭାବରେ ଭ୍ରାନ୍ତ । ସଂସାର-ଦୃଷ୍ଟିରେ ଯାହା ସର୍ବଥା ପରିହେୟ ଓ ପରିହାର୍ଯ୍ୟ, ଭକ୍ତଦୃଷ୍ଟିରେ ତାହା ଏକାନ୍ତ ଅପରିହେୟ ଓ ଅପରିହାର୍ଯ୍ୟ କର୍ତ୍ତବ୍ୟ । ଦେଖ, ଗୋପୀମାନଙ୍କର କପରି ସେ ଅପରିହେୟ ଭ୍ରମ ଜାତ ହେଲା । କେହି ସୁବେଶ ହେବାପାଇଁ ବସି କବରୀ ବାନ୍ଧୁଥିଲେ, କିନ୍ତୁ ମୁରଲୀଧ୍ୱନି ଧନ୍ଦା

ଲଗାଇବାରୁ ସେ ତାହା ବାନ୍ଧି ନ ପାରି ଅସମ୍ପୂର୍ଣ୍ଣ ବେଶରେ ଧାଇଁଲା । ବଂଶୀସ୍ୱନ ତାହାଙ୍କୁ ଉତ୍କଣ୍ଠ କରିବାରୁ ସେ କସ୍ତୂରୀକୁ ଅଞ୍ଜନ ଭୋଳି ନୟନରେ ରଞ୍ଜନକରି କପୋଳରେ କଜ୍ଜଳରେଖା ଘେନି କଟିଭୂଷଣ କଣ୍ଠରେ ଲଗାଇଲା ଓ କଣ୍ଠଭୂଷଣ କଟିରେ ଖଞ୍ଜିଲା । କେହି ଗୋଟିଏ ଚକ୍ଷୁରେ ଅଞ୍ଜନ ଘେନି ହସ୍ତରେ ଚନ୍ଦନ ଧରି ଅନ୍ୟ ସକଳ କର୍ମ ଛାଡ଼ି ଅସମ୍ଭାଳ ବେଶଭୂଷାରେ କୃଷ୍ଣ ଦର୍ଶନ ପାଇଁ ଦଉଡ଼ିଲା । ଖରଗତି ବଶତଃ କିଙ୍କିଣି, ଘାଗୁଡ଼ି ବଳା ଓ ନୂପୁର ମଞ୍ଜୁଳ ଶବ୍ଦ କଲା । ମଣିମୟକୁଣ୍ଡଳ ସ୍କନ୍ଧୋପରି ବେଗରେ ଦୋଳାୟିତ ହେଲା ।

କାମିନୀମାନେ ଏହିରୂପେ ଦଳ ଦଳ ହୋଇ ପଥ ନପାଇ ଏବାଟେ ସେବାଟେ ଏକ ଧ୍ୟାନରେ ଦଉଡ଼ିଲେ । ଯେପରି ସରିତ୍‌ମାନେ ସରିତ୍-ପତିଙ୍କ ସଙ୍ଗ ପାଇବାପାଇଁ କେତେ ମାର୍ଗରେ ଯାଇ ସଙ୍ଗମସ୍ଥଳରେ ସ୍ଥିର ହୁଅନ୍ତି, ଗୋପୀମାନେ ସେହିପରି ଅବଶେଷରେ କୃଷ୍ଣଙ୍କୁ ଭେଟି ଖରଗତି ତ୍ୟାଗକରି ଧୀର ସ୍ଥିର ହେଲେ । ଭଗବାନଙ୍କର ଆବାହନ ଓ ଅର୍ଚ୍ଚନପାଇଁ ଏତେଗୁଡ଼ିଏ ଭକ୍ତଙ୍କର ଏତେଗୁଡ଼ିଏ ହୃଦ୍‌ରତ୍ନ-ସିଂହାସନ ସଜ୍ଜିତ ହୋଇ ରହିଲା । ବ୍ରଜାଙ୍ଗନାମାନେ ଚନ୍ଦ୍ରକୁ ଚନ୍ଦ୍ରମଣ୍ଡଳ ବେଷ୍ଟନ କଲା ପ୍ରାୟେ କୃଷ୍ଣଙ୍କୁ କଙ୍କଣାକୃତିରେ ବେଷ୍ଟନ କରି ଚନ୍ଦ୍ର ଦାସୀ ପ୍ରାୟେ ଅପଲକନେତ୍ରରେ ସେ ମୋହନମୂର୍ତ୍ତିକୁ ଦର୍ଶନ କରିବାକୁ ଲାଗିଲେ । ନୟନ-ତୃଷିତ-ଚକୋରୀ କୃଷ୍ଣ-ମୁଖଚନ୍ଦ୍ରକୁ ନିବିଷ୍ଟଚିତ୍ତରେ ଚାହିଁ ଅନନ୍ୟମନସ୍କା ହୋଇ କିରଣାମୃତ ପାନ କଲା । କେହି ମହାମତ୍ତ ମୟୂରୀ ପ୍ରାୟେ କୃଷ୍ଣମେଘ ଦେଖି ଆନନ୍ଦିତ ହେଲା । କେହି ଚନ୍ଦ୍ରକାନ୍ତପରି ସ୍ୱେଦଯୁକ୍ତ ହୋଇ ଦ୍ରବରେ ବିଗଳିତ ହେଲା । ତାହାର ଶୁଭତାରକା ହେତୁରୁ ନୟନ ତାରକା କୃଷ୍ଣରୂପ ଦର୍ଶନ କରି ସନ୍ତୋଷ ଲାଭ କଲା । ଦର୍ଶନ କରୁଁ କରୁଁ ତାହାର ଆନନ୍ଦବିନ୍ଦୁ ଉଚ୍ଛଳ ନେତ୍ରତଟରେ ମୌକ୍ତିକରୂପେ ବହିପଡ଼ିଲା । କେହି ସମସ୍ତ ପ୍ରକାର ମନସ୍ତାପ ତ୍ୟାଗକରି ନିଶା ପ୍ରାୟେ ପ୍ରଶାନ୍ତ ହେଲା । ଏହିରୂପେ ବ୍ରଜବାଳାମାନେ ଶରୀର, ଇନ୍ଦ୍ରିୟ

ଓ ମନକୁ ଉନ୍ମୁଖୀ କରି ସେମାନଙ୍କ ସାହାଯ୍ୟରେ ହୃଦୟର ନିଗୂଢ଼ ଓ ଅନ୍ତରତମଦେଶ ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣଙ୍କୁ ଦେଖାଇ ତହିଁରେ ତାହାଙ୍କର ବିରାଜପାଇଁ ଆବାହନ କରିବାକୁ ଲାଗିଲେ ।

ଏହା ଦେଖି ଶ୍ରୀକୃଷ୍ଣ କହିଲେ "ଗୋ, ଗୋପିକାମାନେ, ତୁମ୍ଭେମାନେ ଏତେ ସାହସିନୀ ହୋଇ ଏତେ ରାତିରେ କାହିଁକି ଏଠାକୁ ଆସିଲ ? ସ୍ୱଭାବତଃ ଭୀରୁ ହେଲେହେଁ ନିର୍ଭୟରେ କୁଳଶୀଳଲାଜ ତୁମ୍ଭେମାନେ କିପରି ପରିତ୍ୟାଗ କଲ ? ତୁମ୍ଭମାନଙ୍କୁ ଦୂରରୁ ଦେଖି ମନେ କରୁଛି, ତୁମ୍ଭେମାନେ ଅତୀବ ଅଜ୍ଞାନ, ସଂସାର ଓ ସମାଜକୁ ଅବହେଳାକରି ସ୍ୱେଚ୍ଛାଚାରିଣୀ ହେବାକୁ ତୁମ୍ଭମାନଙ୍କୁ କିଏ ଶିଖାଇଲା ?" ଗୋପୀମାନେ ଉତ୍ତର କଲେ, "ହେ ବେଣୁଧାରି, ଆପଣଙ୍କର ବେଣୁସ୍ୱନହିଁ ଏହା ଶିଖାଇଅଛି ? ସେ ଯଦି ଉଚ୍ଚାଟ କରି ନଥାନ୍ତା, କାହିଁକି ଆମ୍ଭେମାନେ ଅବାଟକୁ ବାଟ କରିଥାନ୍ତୁ । କାହିଁକି ଗୃହ ଓ ସ୍ୱାମୀ ଛାଡ଼ିଥାନ୍ତୁ । ମୁରଲୀ ଗୀତ କର୍ଣ୍ଣରେ ଶୁଣି କୁରୁଙ୍ଗୀ ପ୍ରାୟ ମୋହିତ ହୋଇ ଅସମ୍ଭାଳ କେଶବାସରେ ଧାଇଁ ଆସିଲୁଁ । ଏବେ ଦେଖୁଛୁଁ ଆମ୍ଭର ସମସ୍ତ ଶ୍ରମ ବିଫଳ; ହେ ଭଗବାନ, ଆପଣଙ୍କର ରୂପଶ୍ରୀ ଦର୍ଶନ କରି ଆମ୍ଭର ହୃଦୟ ଅନଳରେ ପତଙ୍ଗବତ୍ ହେବାକୁ ଉତ୍ସୁକ ହେଲାଣି; "ଗୋପୀ ଆସ ଆସ" ଡାକ ପୁଣି କାହିଁକି ଆମ୍ଭମାନଙ୍କୁ ନିରାଶ କରୁଛନ୍ତି ? ହେ କୃଷ୍ଣ, ଆମ୍ଭେମାନେ କୁଳ, ଶୀଳ ଓ ଲଜ୍ଜା ତ୍ୟାଗ କରିନାହୁଁ; ଗୃହ, ସ୍ୱାମୀ, ପିତା, ମାତା, ପୁତ୍ର ଓ କନ୍ୟା ସମସ୍ତ ଆପଣଙ୍କଠାରେ ଏକାଧାରରେ ଦର୍ଶନ କରୁଅଛୁଁ । ସଂସାରୀ ଜନପରି ହୋଇ ଆପଣ କାହିଁକି ଏପରି 'ଚତୁରାଇ' ପଶୁରୁଛନ୍ତି ? ସଂସାରୀ ଅନ୍ଧ ବୋଲି କି ସଂସାରଯାକ ସମସ୍ତେ ଅନ୍ଧ ? ସେ ଆମ୍ଭମାନଙ୍କୁ ଅଜ୍ଞାନତା ଯୋଗୁଁ କୁଳଟା ବୋଲେ, ସେଥିପାଇଁ କି ଆପଣ ଆମ୍ଭମାନଙ୍କୁ ପରିତ୍ୟାଗ କରିବେ ? ହେ କୃପାଳୁ ! ଆପଣ ଦୟା ନ ଦେଖାଇଲେ ଆମ୍ଭେମାନେ ସବୁଆଡ଼ୁଁ ନଷ୍ଟ ହେଲୁଁ; ବର୍ତ୍ତମାନ ଆମ୍ଭେମାନେ କେଉଁଠାକୁ ଯିବୁଁ ଏବଂ କାହିଁକି ବା ଯିବୁଁ, ତାହା କହି ଦିଅନ୍ତୁ; ଆମ୍ଭେମାନେ ଆପଣଙ୍କର ଚରଣରେ ଭକ୍ତି

ଓ ପ୍ରେମରେ ବନ୍ଧା ରହିଅଛୁଁ; କେହି ସଚ୍ଚିଦାନନ୍ଦ ଶୁଦ୍ଧ ସଂସାରର ବନ୍ଧନରେ କେବେ ଭୂଲିବ କି ? ଆମ୍ଭେମାନେ ପରା ଆପଣଙ୍କର ଦୟାରେ ପାଳିତ ଓ ସ୍ନେହରେ ଜୀତ; ହେ କୃଷ୍ଣ, ଆମ୍ଭମାନଙ୍କୁ ଦୟା କରନ୍ତୁ ।"

ଶ୍ରୀକୃଷ୍ଣ ଅନୁରାଗ ବିସ୍ତାର କରି ହସି ହସି କହିଲେ,—"ବୁଝିଲି, ତୁମ୍ଭେମାନେ ମୋର ପ୍ରାଣ; ମୋର କଣ୍ଠର ଅମୂଲ୍ୟ ରତ୍ନମାଳା । ଆସ, ବର୍ତ୍ତମାନ ରାସକେଳି କରିବା; ଆସ ଭକ୍ତବୃନ୍ଦ ଆସ, ମୋର ସଙ୍ଗଲାଭ କରି ଅପାର ଆନନ୍ଦ ସମ୍ଭୋଗ କର; ତୁମ୍ଭର ଆନନ୍ଦରେ ମୋର ଆନନ୍ଦ ଓ ତୁମ୍ଭ ପ୍ରୀତି ସମ୍ପାଦନହିଁ ମୋର ଏକମାତ୍ର ଉଦ୍ଦେଶ୍ୟ ।" ଏ ଅମୀୟ ସାନ୍ତ୍ୱନାବାଣୀ ଶୁଣି କାମିନୀମାନେ ରାସକେଳି ବେଶ ଆରମ୍ଭ କଲେ । କେହି ବୀଣା, କେହି ମର୍ଦ୍ଦଳ, କେହି ରବା, କେହି ଉପାଙ୍ଗ ଏବଂ କେହି ବା ବଂଶୀ ଧଇଲା; କେହି ଗୋପୀ ହର୍ଷରେ ସ୍ୱରମଣ୍ଡଳ ଘେନିଲା; କେହି ତାଳେ ତାଳେ କରତାଳି ଦେବାପାଇଁ କର ପ୍ରସାରଣ କଲା; କାହାର ହସ୍ତରେ ଦିବ୍ୟ ଚାମର ବିରାଜ କଲା; ଏବଂ କେହି ଆଲଟ-ଛତ୍ର ଘେନି ଦଣ୍ଡାୟମାନ ହେଲା । ଯେଉଁ କାଳରେ ଓ ଯେଉଁ ସ୍ଥଳରେ କୋଟି ବ୍ରହ୍ମାଣ୍ଡନାଥ ସ୍ୱୟଂ ବିଦ୍ୟମାନ, ସେ କାଳର ଓ ସେ ସ୍ଥଳର ଶୋଭାସମ୍ପତ୍ତି କିଏ ଲେଖିପାରିବ ? ଯାହାର ଇଙ୍ଗିତରେ କୋଟି ଲକ୍ଷ୍ମୀ ଆଗ୍ରହସହକାରେ ସେବାଦାସୀ ହୁଅନ୍ତି, ଏବଂ କୁବେର ଯାହାର ଆଜ୍ଞାକାରୀ କିଙ୍କର, ସେ ପ୍ରଭୁଙ୍କୁ କେଉଁକଥା ଅପ୍ରାପ୍ୟ ଓ ଅସମ୍ଭବ । ଭଗବାନ ଶ୍ରୀକୃଷ୍ଣ ଭକ୍ତ ଗୋପୀମାନଙ୍କସହିତ କାନନ ମଧ୍ୟରେ ପ୍ରବେଶ କରି ବନବିହାର କଲେ । କାହାରି ମନ ବିରସ ନଥିଲା; ସମସ୍ତଙ୍କର ଚନ୍ଦ୍ରକାନ୍ତ କଳେବର କଳାକର କରରେ ଝଳି ଉଠୁଥିଲା । ପରଂବ୍ରହ୍ମ ପ୍ରତ୍ୟକ୍ଷଭାବରେ ଉଭା ହେଲେ । ଗୋଟିକା ପଙ୍କ୍ତି କଳାକରକୁ ତାରାମଣ୍ଡଳ ବା ତମାଳ-ମୂଳକୁ ସ୍ୱର୍ଣ୍ଣ-ଆଳବାଳପରି ଶ୍ରୀକୃଷ୍ଣଙ୍କୁ ବେଷ୍ଟନ କରି ସୁନ୍ଦର ଦିଶିଲେ । ଗୋପୀ ମଣ୍ଡଳୀ ମଧ୍ୟରେ ଶ୍ରୀ ଘନଶ୍ୟାମ କନକଶକ୍ତ ଉପରେ ମର୍କତ ଲିଙ୍ଗପରି ଶୋଭାପାଇଲେ । ସାନୁରାଗ ରାସର ଆରମ୍ଭ ହେଲା । ବିଭିନ୍ନ ସ୍ୱରଙ୍କର କର୍ଣ୍ଣପ୍ରିୟ ହୋଇ ପ୍ରାଣ ସ୍ପର୍ଶକଲା ।

କଳକଣ୍ଠୀ ଗୋପିକାମାନେ ସଙ୍ଗୀତ ଗାନକଲେ; ସଶବ୍ଦ ଅଭିନୟ ତାହାର ଅର୍ଥକଲା ଓ ପାଦ ତାଳଘାତ କରି ତାହାର ସମର୍ଥନକଲା। କେହି କାହାକୁ ତାନମାନ-ଲୟରେ ଊଣା ନ ଥିଲେ। ରାସ-କ୍ରୀଡ଼ାରତା ପଦ୍ମ-ବଦ୍ୟାପରା ଗୋପବାଳାମାନଙ୍କର ହୃଦୟ ଭାବରେ ଗଦ୍‌ଗଦ ହେଲା ଏବଂ ନୟନ ସ୍ୱତଃ ତାଳମୟ ହୋଇ ସେ ଅବ୍ୟକ୍ତ ଭାବରେ ବିଭୋର ହେଲା। ଚନ୍ଦ୍ରବିମ୍ବମୁଖ ବିମଳହୃଦୟର ରାସଭାବ-ପ୍ରତିବିମ୍ବ ଧାରଣ କରି ଆନନ୍ଦମୟ ହେଲା। ନୂପୁର,କଙ୍କଣ ଓ କିଙ୍କିଣୀ ମଧ୍ୟ ରାସରସ ଗ୍ରହଣ କରି ଜଡ଼ତା·ତ୍ୟାଗପୂର୍ବକ ନିରତିଶୟ କଳରବ କଲେ।

ହେ ପ୍ରେମିକଗଣ, ଏକମନରେ ଓ ଏକପ୍ରାଣରେ ତାହାଙ୍କର ଆହ୍ୱାନ ଶ୍ରବଣ କରି କୁଳଶୀଳଲଜ୍ଜାତ୍ୟାଗପୂର୍ବକ ତାହାଙ୍କ ଆଡ଼େ ଧାବମାନ ହୁଅ, ଏବଂ ଗୋପିକାଶ୍ରେଣୀରେ ଦଣ୍ଡାୟମାନ ହୋଇ ନୃତ୍ୟ ରାସା-ରମ୍ଭରେ ଯୋଗଦିଅ।



## ଅଷ୍ଟାଦଶ ପରିଚ୍ଛେଦ।



କୁସୁମମଣ୍ଡିତ ତରୁଲତା ଗୋପୀ-କୃଷ୍ଣ ଉପରେ ସୁବାସ କୁସୁମ ବୃଷ୍ଟିକରି ଏକ ଦୃଷ୍ଟିରେ ରାସକ୍ରୀଡ଼ା ଦେଖିବାକୁ ଲାଗିଲେ। କେଉଁ ତପଫଳରେ ଏମାନେ ଦେବତାମାନଙ୍କପରି ପଲକହୀନ ହୋଇଛନ୍ତି? ଏମାନେ ନିଷ୍କର୍ମଭାବରେ ଦଣ୍ଡମାନ ରହି ରାସର ଅକଥନୀୟ ଶୋଭା-ଦର୍ଶନ କରି ମନ୍ତ୍ରମୁଗ୍‌ଧବତ୍ ଅବଶ ହେଲେ। ପ୍ରସ୍ଫୁଟିତ ପ୍ରସୂନ ନେତ୍ରାନନ୍ଦ ହୋଇ ସୌରଭ ବିତରଣ କରୁଥିଲା ଏବଂ ଶୀତଳ ଗନ୍ଧବହ କାଳିନ୍ଦୀ-ବକ୍ଷରେ ରହି ରହି ଗତି କରୁଥିଲା। କରମ୍ବିତ ଗୋପିକାମାନଙ୍କର ମାନସ ପ୍ରମୋଦକାରୀ କିଙ୍କିଣୀ-ନୂପୁର-ନାଦ ସେ ବୃନ୍ଦାବନକୁ ମୁଖରିତ କରୁ-

ଥିଲା । କାହାର କଣ୍ଠ ବ୍ରହ୍ମା-ତନୟା-ବୀଣାକୁ ନିନ୍ଦା କରୁଥିଲା, କାହାର ସ୍ୱର କୋକିଳ ପଞ୍ଚମକୁ ଜିଣିଥିଲା । ତାନମାନ ଲୟାଦି କେଉଁ ଗୁଣରେ କିଏ ପ୍ରବୀଣା ନଥିଲା ? ସେମାନେ ଉଚ୍ଚ, ନୀଚ, କୃଶ ବା ସ୍ଥୂଳ ନଥିଲେ । କେହି ବୟସରେ ବଡ଼ ନଥିଲା କି ସାନ ନଥିଲା । ସମସ୍ତେ କୃଷ୍ଣଠାରେ ଅନୁରାଗିଣୀ ହୋଇ ବିଷୟ ତ୍ୟାଗିନୀ ହୋଇଥିଲେ । ସେମାନେ ଯେପରି ଭକ୍ତିମତୀ ସେହିପରି କାନ୍ତିମତୀ । ସମସ୍ତେ ଅଶେଷ ପ୍ରକାର ବେଶସଜାଢ଼ କୃଷ୍ଣ-ମାନସ-ମାନସ-ହଂସ ହୋଇ ତ୍ରୈଲୋକ୍ୟ ବଶ କଲେ । କାହାର କୁଟିଳକୁନ୍ତଳବେଣୀ କୃଷ୍ଣସର୍ପିଣୀ ବା ଭ୍ରମର ଶ୍ରେଣୀର ଭ୍ରମ ଜନ୍ମାଇଲା । କେହି ନିଃଶ୍ୱାସ ନେବାକୁ ସୁଦ୍ଧା ଭୁଲି ଯାଇ କୃଷ୍ଣଙ୍କୁ ନୟନରେ ଗ୍ରାସ କଲା । କେହି ସମ୍ପୂର୍ଣ୍ଣ ନିର୍ବିକାର ହୋଇ ସୁଖ ଓ ଉଲ୍ଲାସର ସର୍ବସୀମା ଲଙ୍ଘନ କଲା; ଉପମା ନପାଇ ଅହଙ୍କାର ଗୁଡ଼ି କରି ଏମାନଙ୍କୁ ସମ୍ମାନ କଲା । କେହି କୁସୁମଭୂଷିତ ରଜତପଦ୍ମମଣ୍ଡିତ ଝୁମ୍ପା-ବେଷ୍ଟିତ ଗଣ୍ଠି ବାନ୍ଧି କୃଷ୍ଣ-ମନଲୋଭା ହେଲା । କେହି ଲୋଟଣୀ ଜୁଡ଼ାରେ କେତକୀ ପାଖୁଡ଼ା ଖୋସି କେତେ ଚୋର ଧରିଲା । ରଙ୍ଗଶାଢ଼ୀ ଜୁଡ଼ାକୁ ଆଚ୍ଛାଦନ କରି 'ରଙ୍ଗଶାଢ଼ୀ-ଘର' ପ୍ରାପ୍ତ ହେଲା । କାହାର ଅଳକାବଳୀ କାଳିନ୍ଦୀ-ଲହରୀ ସମ କୁଞ୍ଚିତ ହୋଇ କପୋଳତଳରେ ଝୁଲୁଥିଲା ଏବଂ ସୁବର୍ଣ୍ଣ ମାଳି ଝଲକ କମ୍ପୁଥିଲା । କାହା କପାଳର ଗନ୍ଧତିଳକ ଭୁବନମୋହନ ହୋଇ କୃଷ୍ଣ ମନ ଚହଲାଉଥିଲା । କାହାର ସିନ୍ଦୂରଚିତା ରକ୍ତରଞ୍ଜିତ କରବାଳ ପ୍ରାପ୍ତ ଲଲାଟ ଉଜ୍ଜ୍ୱଳକୁ ଟଣା ହୋଇଥିଲା । କେଉଁ ଗୋପୀର ଖଞ୍ଜନଗଞ୍ଜନ ନେତ୍ର କଜ୍ଜଳରଞ୍ଜିତ ହୋଇ ନର୍ତ୍ତନତାଳରେ ନାଚୁଥିଲା । ଏବଂ ଭ୍ରୂଲତା-ଭଙ୍ଗିମା-ଛବି ଇନ୍ଦ୍ରଧନୁସମ ମୃଦୁବଙ୍କ ହୋଇ ଅତୁଳନୀୟ ଥିଲା । କାହାର କର୍ଣ୍ଣରେ ଦର୍ପଣ-ସ୍ୱଚ୍ଛ କୁଣ୍ଡଳ ଝଲକୁ ଥିଲା, ଦେହରେ ପୁଲକ ବଢ଼ୁଥିଲା ଏବଂ ନେତ୍ରରେ ପଲକ ପଡ଼ୁନଥିଲା । କେଉଁ ଗୋପୀର ନାସାମୋତି କାଞ୍ଚନକୁ ବଳି ଜ୍ୟୋତିଷ୍ମତୀ ହୋଇ ଦନ୍ତ-ପ୍ରତିଚ୍ଛବି ଧାରଣ କରିଥିଲା । କାହାର ବାହୁଲତା ନାନାରତ୍ନଭୂଷିତ ହୋଇ ପୁଷ୍ପବତୀ ବଲ୍ଲରୀସମ ସୁଷମ ହୋଇଥିଲା । ରଙ୍ଗଶାଢ଼ୀ ଉପରେ ଗଜ-

ମୋତିହାର ଲୋହିତ ମେଘରେ ତାରାପୁଞ୍ଜପରି ନୟନଗୋଚର ହେଉଥିଲା । ଘାଗୁଡ଼ି, ବଳା ଓ ହଂସକ କଳହଂସ ପ୍ରାୟ ଡାକୁଥିଲା, ନା ପଦାରବିନ୍ଦରେ ଭୃଙ୍ଗମଣ୍ଡଳୀ ଝଙ୍କାର କରୁଥିଲା ? ଏହିପରି କେତେ କମନୀୟ ବେଶରେ କେତେ ଅଭିନବରୂପ ନୃତ୍ୟ କରୁଥିଲେ ।

ନୃତ୍ୟରତା ଗୋପବାଳାମାନେ କେତେବେଳେ ପ୍ରବନ୍ଧ, କେତେବେଳେ ଛନ୍ଦ, ଚଉପଦୀ, କେବେ ବା ଚମ୍ପୂକାବ୍ୟ ଆଦି ଗାଉଥିଲେ । ଆଜ୍ଞାକାରିଣୀ ବନସ୍ପତି ପ୍ରକୃତିରାଣୀଙ୍କର ନିସର୍ଗସୁନ୍ଦର ବନଭବନରେ ଅତିଥି ବନବିହାରୀଙ୍କ ସୁଖ ସମ୍ବର୍ଦ୍ଧନାର୍ଥ କେଉଁ ବିଷୟଟି ବା କେଉଁ ପଦାର୍ଥଟି ସଜ୍ଜିତ ନଥିଲା ? ଯେଣେ ଅନାଇଲେ କୁସୁମବୃଷ୍ଟି, ଯହିଁ ତକାଇଲେ ଲଳନା-ଦୃଷ୍ଟି, ଯେଉଁଠି ଚାହିଁଲେ ଆନନ୍ଦସୃଷ୍ଟି । ସେହି ଆଦିପୁରୁଷର ନିତ୍ୟସଙ୍ଗ ନିମିତ୍ତ ପ୍ରକୃତି କେତେ ଉପାୟ ନକରୁଛି ! ସେହି ଶାଶ୍ୱତ ପୁରୁଷଙ୍କୁ ନିଜ ପାଶରେ ଆବଦ୍ଧ ରଖିବାପାଇଁ ସେ ଅନାଦି କାଳରୁ ପଞ୍ଚମହାଭୂତରେ କେତେ ଜୀବ-ଜଡ଼-ଉଦ୍ଭିଦ-ଘଟ ନ ରଚିଆଇଲାଣି ! କିନ୍ତୁ ଜଳଘଟରେ ଆକାଶ-ପ୍ରତିବିମ୍ବ ଅନନ୍ତକାଳପର୍ଯ୍ୟନ୍ତ ପ୍ରତିଫଳିତ ହେବା ଅସମ୍ଭବ; ତଥାପି ପ୍ରକୃତି ନିତ୍ୟ ନବଘଟ ନିର୍ମାଣକରି ନବନବ ଉପାୟ ଉଦ୍ଭାବନ କରି ନିଜ ଚେଷ୍ଟାରେ ଲାଗିରହିଛି । ଆଜି ରାସକେଳିରେ ସେହି ଉଦ୍ୟମ । ମୋହନଙ୍କର ମନମୋହନ କରିବାପାଇଁ ପ୍ରକୃତି ଫୁଲରାଣୀବେଶ ଧାରଣ କଲା ଏବଂ ପ୍ରକୃତିରୂପା ବ୍ରଜବାଳାମାନେ ନାଦ, ଶ୍ରୁତି, ସ୍ୱର, ମୂର୍ଚ୍ଛନା, ତାଳ, ତାନ, ଲୟ ଓ ନାନାଜାତି ରାଗରାଗିଣୀରେ ଶ୍ରୀକୃଷ୍ଣଙ୍କର ସନ୍ତୋଷପାଇଁ ଲବ ମାତ୍ର ହେଳା କଲେନାହିଁ; କୌଣସିଟି କଳା ମାତ୍ର ଅଭାବ ହେଲାନାହିଁ । ଏହିରୂପେ ଗୋପୀକୃଷ୍ଣ ଅପାର ରାସ-ରସ-ସାଗର ମନ୍ଥିବାକୁ ଲାଗିଲେ ।

ରାସକ୍ରୀଡ଼ା ବଚନାତୀତ । ସେ ପ୍ରଭୁ କୃପା ନ କଲେ, କିଏ ତାହାଙ୍କର ଲୀଳା କହି ଶେଷ କରିପାରିବ ? ପଙ୍ଗୁ ଗିରି ଲଙ୍ଘିପାରେ କି, ବା

ଅକୂଳ ପାରବାର ପହଁର ଯାଇପାରେ କି ? ତାଙ୍କର କୃପା ନଥିଲେ କେହି ଚନ୍ଦ୍ରକୁ କରରେ ବା ବସୁନ୍ଧରାକୁ କୋଳରେ ଧରିପାରେ କି ? ସେ ନିଜେ ସଦୟ ନହେଲେ, କିଏ ସେ ନବଦୁର୍ବାଦଳ-ଶ୍ୟାମ ବେଣୁଧାରୀ ରାସବିହାରୀଙ୍କୁ ଏ ମାନବ ଚକ୍ଷୁରେ ଦର୍ଶନ କରିପାରେ ? ହେ ଭକ୍ତମାନେ, ଭଗବତ୍ କୃପାରେ ତୁମ୍ଭମାନଙ୍କର ହୃଦୟ ରାସ-କ୍ରୀଡ଼ା-କାରିଣୀ ଗୋପିକା-ମାନଙ୍କ ହୃଦୟ ତୁଲ୍ୟ ଈଶପ୍ରେମରେ ଉଲ୍ଲସିତ ହୋଇ ତାଳେ ତାଳେ ନର୍ତ୍ତନ କରୁ ଏବଂ ରାସ-ପୂର୍ଣ୍ଣିମା ସଙ୍ଗେ ସଙ୍ଗେ ପ୍ରେମରସରେ ପୂର୍ଣ୍ଣ ହୋଇ ନିଶବ୍ଦ, ନିଶ୍ଚଳ ଓ ପ୍ରଶାନ୍ତ ହେଉ ।

---

## ଊନବିଂଶ ପରିଚ୍ଛେଦ ।



କ୍ରୀଡ଼ା ଶେଷରେ ଗୋପନାରୀମାନେ ମଣ୍ଡଳୀ କରି ବସି ଚନ୍ଦ୍ରକିରଣ ଓ ମନ୍ଦସମୀରରେ ଅଙ୍ଗଶ୍ରମ ହରିବାକୁ ଲାଗିଲେ । କାହାର ମୁଖମଣ୍ଡଳରେ ସ୍ୱେଦବାରି ବିନ୍ଦୁ ବିନ୍ଦୁ ହୋଇ ଲାଗିଥିଲା; ମନେ ହେଉଥିଲା କେଶ-ରାହୁ-ଦନ୍ତ-ଘାତରେ ମୁଖଚନ୍ଦ୍ରରୁ ସ୍ୱେଦାମୃତ ବାହାରୁଥିଲା । କାହାର ସ୍ନିଗ୍ଧ ଆଲୁଳାୟିତ କୁଞ୍ଚିତ କୁନ୍ତଳ କପୋଳ-ଦେଶରେ ପଡ଼ି ପୌର୍ଣ୍ଣମାସୀ ଚନ୍ଦ୍ରକୁ ରାହୁ ଅଳ୍ପ ଅଳ୍ପ କରି ଗ୍ରାସ କରୁଥିବାର ଦୃଶ୍ୟ ଧାରଣ କରିଥିଲା । କାହାର ଚୂର୍ଣ୍ଣକୁନ୍ତଳ ଚନ୍ଦ୍ର-ଚନ୍ଦ୍ରିକାରେ ଚକୋରବତ୍ ବା ପଦ୍ମ-ପ୍ରସୂନରେ ଭ୍ରମରବତ୍ ମୁଖମଣ୍ଡଳରେ ଖେଳୁଥିଲା । କୁଣ୍ଡଳୀ କାଞ୍ଚୁଲି ଗୁଡ଼ିଲା ପ୍ରାୟ କେହି ଉତ୍ତରୀୟବାସ ସ୍ୱଇଚ୍ଛାରେ ବାହାର କଲା । କେହି ଅତଶ୍ରମ-ପାଇ କରତଳରେ କଣ୍ଠ ଦେଇ ଅର୍ଦ୍ଧଶାୟିନୀ ହେଲା ।

କ୍ଷଣକାଳପାଇଁ କୃଷ୍ଣଙ୍କୁ ଭୁଲି ଗୋପୀମାନେ ଯେତେବେଳେ ଆତ୍ମ-ସୁଖ-ବିଧାନରେ ତତ୍ପର ହେଲେ ଏବଂ ସେମାନଙ୍କର ମନ ସୁଖ-ଦୁଃଖ-

ଅନୁଭୂତିର ଅଧୀନ ହେଲା, ସେତେବେଳେ ଭାବଗ୍ରାହୀ କୁବଳୟଦଳଶ୍ୟାମ କେବଳ ଜଣେ ଗୋପୀର ଭାବରେ ବିଭୋର ହେଲେ ଏବଂ ସମସ୍ତଙ୍କ ସଙ୍ଗ ଛାଡ଼ି ତାହାର କର ଧରି ସେଠାରୁ ଅନ୍ତର ହେଲେ । ସ୍ଥାନାନ୍ତରରେ ଭ୍ରମଣ କରୁଁ କରୁଁ ଗୋପୀର ପ୍ରୀତିସାଧନାର୍ଥ ଗୋପୀନାଥ କହିଲେ,—"ସଖି, ଦେଖ ଦେଖ, କୁଞ୍ଜବନ କି ମନୋହର ହୋଇଅଛି; ଏ ବୃକ୍ଷ-ଶିରରେ କପିବର ବସିଥିବାରୁ ବୃକ୍ଷ କୃଷ୍ଣରଥ କପିଧ୍ୱଜ ପ୍ରାୟ ଶୋଭା ପାଉଛି; ଗରୁଡ଼ ଅନୁଗ୍ରହରେ ଯେପରି କୌଣସି କୌଣସି ସ୍ଥାନରେ କରୁଣାସାଗର-ଙ୍କର କମ୍ବୁ-ଚକ୍ର-ଧର ପଦ ପ୍ରକାଶିତ ହୁଏ, ସେହିପରି, ଦେଖ, ସେଠାରେ ବୃହଦାକାର ପକ୍ଷିମାନେ କମ୍ବୁଚକ୍ରାକୃତିରେ ଧାଡ଼ିଧରି ବସିଥିବାରୁ ସ୍ଥାନ-ଟିର 'କମ୍ବୁ-ଚକ୍ର-ଧର' ପଦ ସିଦ୍ଧ ହୋଇଅଛି; ଦେଖ ଦେଖ, ଏ କୁଞ୍ଜ କି ସୁନ୍ଦର ହୋଇଅଛି ! କହିଲ ଭଲା କେତେ ଫୁଲରେ ଏ ଏଡ଼େ ଶୋଭା ଦିଶୁଛି ? ବନ-ପର୍ବତ-ବୃକ୍ଷଲତା କୁସୁମ-ମଣ୍ଡିତ ହୋଇ କି ଅପୂର୍ବ ଶ୍ରୀଧାରଣ କରିଅଛି !" କୃଷ୍ଣ ବାଣୀ ଶୁଣି ଗୋପୀ ହର୍ଷରେ କହିଲା,—"କୁଞ୍ଜ ବନଯାକ ପୂରି ଶାରିଫଳରେ ଶାଖା ବସିଲା ପ୍ରାୟ ଗୋଟି ଗୋଟି ହୋଇ କେତେ ଶାଖା ବସିଛନ୍ତି !" କୃଷ୍ଣଚୂଡ଼ା ପଦ୍ମ ପୁଷ୍ପବୃନ୍ତ ସଙ୍କୋଚନ କରି ମୁଦ୍ରିତ ହୋଇଥିବାର ଦେଖି ଗୋପୀ ସାଦରେ ପ୍ରଶ୍ନ କଲା, "ଏ ମଧୁ-ଯାମିନୀରେ ଏ କାହିଁକି ଶୟନ କରିଛି ?" କେଉଁଠାରେ କେକୀ ଗମନ କରୁଥିବାର ଦେଖି କାମିନୀ କହି ଉଠିଲା, "ଅନାଉନ୍ତୁ, ଅନାଉନ୍ତୁ, କାର୍ତ୍ତି-କେୟ ନିଜର ବାହନ ଉପରେ ଆରୋହଣ କରି ବନଭ୍ରମଣ କରୁଛନ୍ତି ।" ପୁଣି, କୌଣସି ଅନ୍ଧକାରମୟ କୁଞ୍ଜ-ମନ୍ଦିରରେ ହିତାଂଶୁ-କୌମୁଦୀ ବିଶ-ଳୟ-ସନ୍ଧି ଭେଦକରି ପତିତ ହୋଇଥିବାର ଲକ୍ଷ୍ୟକରି ବ୍ରଜବାଳା ଛଳରେ କହିଲା,—"ଅନ୍ଧକାର କଳାକର ଭୟରେ କୁଞ୍ଜରୁ ନ ବାହାରି-ବାରୁ କଳାଙ୍କର କୌମୁଦୀକର ବଢ଼ାଇ ତାହାକୁ ଧରୁଅଛି ପରା ?" ରମଣୀର ଏରୂପ ଉତ୍ପ୍ରେକ୍ଷା ବଚନ ଶ୍ରବଣ କରି ଶ୍ରୀକୃଷ୍ଣ କହିଲେ, "ତୁମ୍ଭେ କଥାଭଙ୍ଗୀରେ ବେଦପଦ୍ଧତିକୁ ନିର୍ବେଦ କରିବ କି ? ବୁଝିଲି, ମହତ୍ସଙ୍ଗରେ ଭକ୍ତ-ପ୍ରାଣ ସର୍ବଗ୍ରନ୍ଥି ଛେଦନ କରି ଉତ୍ଫୁଲ୍ଲ ହୋଇଉଠେ;

ଆତ୍ମ-ପ୍ରସାଦରେ ମନର ପ୍ରସନ୍ନତା ଘଟେ ଏବଂ ମନର ପ୍ରଫୁଲ୍ଲତା-କାଳରେ ପ୍ରକୃତିର ରମଣୀୟତା ସମ୍ୟକ୍‌ରୂପେ ପ୍ରତିଭାତ ହୁଏ । ଏ ଦୃଶ୍ୟ ତୁମ୍ଭ ଚକ୍ଷୁରେ ଯେତେ ପ୍ରୀତିପ୍ରଦ, ନୀରସ ତାର୍କିକ- ବା ମୋହାନ୍ଧ ମାନବର ଦୃଷ୍ଟିରେ ତେତିକି ଶିଳାମୟ ଓ ହୀନରସ ପ୍ରତିପନ୍ନ ହୁଏ ।”

ଏହିପରି ନାନା କଥା କହି କୃଷ୍ଣ ଓ ଗୋପୀ ନାନା କୁଞ୍ଜ ଓ ବିଭିନ୍ନ ବନସ୍ଥଳୀ ଦର୍ଶନ କରିବାକୁ ଲାଗିଲେ । ଏକ ସ୍ଥାନରେ କୃଷ୍ଣ କହିଲେ,—
“ସମତା ପ୍ରାପ୍ତହେଲେ ବସ୍ତୁମାନେ ବିଶେଷତଃ ପ୍ରାଣିମାନେ ପରସ୍ପର ପ୍ରିୟ ହୁଅନ୍ତି । ଯେଉଁମାନଙ୍କର କଳେବର ମୋର କଳେବର ସଙ୍ଗେ ସମାନ, ସେମାନେ ମୋର ଅତି ପ୍ରିୟ; ଏହା ତୁମ୍ଭର ପ୍ରତ୍ୟୟ ହେଉଛି କି ନାହିଁ କେଜାଣି । କୁନ୍ତଳ-ମଞ୍ଜୁଳ ତମାଳ ମୋର ମିତ୍ର, ତାହାଠାରେ ମୋର ଅପାର କରୁଣା । କେବଳ ଏହି ହେତୁରୁ କାଳିନ୍ଦୀକୁ ମୁଁ ବଡ଼ ସ୍ନେହକରେଁ । କାଳିକା, କଜ୍ଜଳ, ଭୃଙ୍ଗ ଓ ନୀଳକଣ୍ଠ ଏମାନଙ୍କୁ ଦେଖିବାକୁ ମୋତେ ଅତିଶୟ ସୁଖଲାଗେ । କିନ୍ତୁ ତୁମ୍ଭ ଅଙ୍ଗଚ୍ଛବି ଯେଉଁମାନେ ବହନ କରିଛନ୍ତି, ସେମାନେ ଏ ପ୍ରିୟମାନଙ୍କଠାରୁ ମୋର ଅଧିକ ପ୍ରିୟ । ତୁମ୍ଭର ଭକ୍ତିରସାଳ ହୃଦୟ ଓ ସୁର-ମୁନି-ଲୋଭ ଶୋଭାମୂର୍ତ୍ତି ଯୋଗୁ , କମଳା, ତୁମ୍ଭେ ମୋର- ଯାହା ତାହା ମୁଁ କି ଉପମାଦେଇ କେଉଁ ଭାଷାରେ କିପରି ବ୍ୟକ୍ତ କରିବି? କେତକୀ ତୁମ୍ଭ ଦେହପରି ଗୋର ହୋଇଥିବାରୁ ତାକୁ ମୁଁ ମସ୍ତକରେ ଘେନେ । କାଇଁଚ ତୁମ୍ଭର ସୁରଙ୍ଗଅଧର-ମାଧୁରୀ ବହନ କରିଥିବାରୁ ମୁଁ ତାକୁ ମାଳ କରିବାକୁ ଭଲପାଏଁ । ତୁମ୍ଭ କର-ଚରଣର କିଛି ରଙ୍ଗ କିଶଳୟଠାରେ ଅଛି ବୋଲି ମୁଁ ତାକୁ ଶିରୋଭୂଷଣ କରିଥାଏଁ ।”

ଏହିରୂପେ ଏକାନ୍ତରେ ବିଚରଣ କରୁଁ କରୁଁ ଗୋପୀଗୋପାଳ ଗୋଟିଏ ତରୁତଳରେ ବସିଲେ । କୁସୁମ-ସୁବେଶ ଶ୍ରୀକୃଷ୍ଣ ସ୍ୱହସ୍ତରେ କବରୀରେ ଫୁଲ ଖୋସି ଗୋପୀକୁ କୁସୁମରେ ସୁବେଶ କଲେ । କର୍ପୂର ଚନ୍ଦନ ବୋଳି ତାହାର କପୋଳଦେଶରେ ପତ୍ରାବଳୀ ଅଙ୍କନକଲେ; ଦର୍ପଣ-ଖଣ୍ଡ-

ଗଣ୍ଡ-ଫଳକରେ କସ୍ତୁରୀରେ ମକରୀଚିତ୍ର ଲେଖି ନେତ୍ରତାଳ ଗୁନ୍ଥିଲେ । ନିଜ ନୟନ ସୁଖପାଇଁ ପୁଣି ଗୋପୀନୟନରେ ଅଞ୍ଜନ ଦେଇ ତାହାକୁ ଖଞ୍ଜନ-ଦୃଶ କଲେ ଏବଂ କହିଲେ "ଧାତା ଏହାକୁ କୌତୁହଳ ବଶତଃ ସୃଷ୍ଟି କରିସାରି ଶୀତଳ ଜଳରେ ହାତ ଧୋଇଥିଲେ, ହାତରେ ଲାଗିଥିବା ପଦାର୍ଥ ଜଳରେ ଧୌତହୋଇ ବୀଜରୂପ ଧାରଣକଲା ଏବଂ କାଳକ୍ରମେ କଳାଧଳା ଲୋହିତ ରଙ୍ଗବିଶିଷ୍ଟ ଅମ୍ବୁଜରେ ରୂପାନ୍ତରିତହୋଇ ସଂସାରରେ ସୁନ୍ଦରକାର୍ଯ୍ୟ ସାଧନକଲା । ବ୍ରହ୍ମା ବିଷ୍ଣୁ ମହେଶ୍ୱର ସେନେତ୍ରକୁ ଦେଖି ଲୋଭକଲେ ଏବଂ ସୃଷ୍ଟିପାଳନାର୍ଥ ତାହାର ସାହାଯ୍ୟ ଗ୍ରହଣକଲେ । ଏହି ନେତ୍ରହିଁ କାଟୁଁ ବ୍ରହ୍ମଚର୍ଯ୍ୟ ଏ ଅଜୟକୁ ଜୟକରେ । ଏହାପରି ସାହାପାଇ କିଏ ପାର୍ଥିବ ପ୍ରେମୋଦ୍ଦୀପକ କୁସୁମଧନ୍ୱାର କୁସୁମଧନୁକୁ ଭୟକରିବ ? ଯେ ଏ ଦିବ୍ୟଚକ୍ଷୁ ଲାଭକରେ, ଶତକୁସୁମଶୃପ ତାହାର ଅଟଳ ହୃଦୟରେ ଗୋଟିଏ କୁସୁମଶର ସୁଦ୍ଧା ପ୍ରବେଶ କରାଇ ପାରେନାହିଁ; ପକ୍ଷାନ୍ତରରେ ରତିପତିର ସାମାନ୍ୟ କଥା, ଉମାପତିକୁ ମଧ୍ୟ ସେ ଚକ୍ଷୁବଶ କରିଥାଏ । ଏହି ନେତ୍ରର ବଶହୋଇସିନା ମୁଁ ଆଜ ତୁମ୍ଭର ସହଗାମୀ ହୋଇଅଛି ।" ନେତ୍ରର ପ୍ରଶଂସା କୃଷ୍ଣଠାରୁ ଶୁଣି ଗୋପୀ ବିନୟ କରି କହିଲା,—"ହେ କୃଷ୍ଣ, ମୋର ଏ ହେୟ ନେତ୍ରର କି ଗୁଣ ଅଛି ? ଆପଣଙ୍କର ନେତ୍ର କଟାକ୍ଷମାତ୍ରକେ ଆବ୍ରହ୍ମସ୍ତମ୍ଭ ସକଳ ସୃଷ୍ଟି ଗଢୁଅଛି ଓ ମାରି ତାରୁଅଛି । ସେ ନେତ୍ର ଆଗରେ ପୁଣି ଏ ଗ୍ଲାର ନୟନର ଏତେ ପ୍ରଶଂସା ! ହରି, ଏ ସମସ୍ତ କେବଳ ଆପଣଙ୍କର ଦୟା ।" କୃଷ୍ଣ କହିଲେ,—"ପ୍ରାଣିମାନେ ଯେତେବେଳେ ତୁମ୍ଭ ନାମକୁ ମୋ ନାମର ଅଗ୍ରଣୀକରି ଭଜୁଥାନ୍ତି, ତେତେବେଳେ ମୋର ହୃଦୟରେ ଆହ୍ଲାଦ ଓ ପ୍ରାଣରେ ପୁଲକ ଜାତହୁଏ । ଭକ୍ତ ମୋର ଆଗ ଏବଂ ମୁଁ ନିଜେ ପଛ ।" ଏହିରୂପ ରସଗର୍ଭବାଣୀ କହୁଁ କହୁଁ କୃଷ୍ଣଚନ୍ଦ୍ର ସ୍ୱହସ୍ତରେ ଫୁଲଶେଯ ସଜାଇଦେଲେ ଏବଂ ଗୋପିକାର କର ଧରି ଆଣି ଦେବରାଜ ଶଚୀ ଖେଳରେ ଶଯ୍ୟାରେ ପହୁଡ଼ିଲେ । ଭଗବାନଙ୍କ ସମୀପକୁ ଭକ୍ତର ଆଗମନ କେବଳ ଭଗବାନଙ୍କ ଦୟା ଓ ଇଚ୍ଛାରେ ସଂସାଧିତ ହୋଇପାରେ । ଯେତେ ମନଥିଲେହେଁ ଯେତେ ଚେଷ୍ଟା

କଲେହେଁ ସସୀମ ଅସୀମର ନିକଟବର୍ତ୍ତୀ ହୋଇ ପାରେନାହିଁ, ତେଣୁ ଲୋକଗୁରୁ ଭଗବାନ କଥାରେ ଶିଖାଇ ଓ କାର୍ଯ୍ୟରେ ଦେଖାଇ ଭକ୍ତକୁ ନିଜଆଡ଼କୁ ଧୀରେ ଧୀରେ ଆକର୍ଷଣ କରନ୍ତି ଏବଂ ନିଜପାର୍ଶ୍ୱରେ ତାହାର ସ୍ଥାନ ନିର୍ଦ୍ଦେଶ କରନ୍ତି ।

ହେ ସାଧୁଜନମାନେ, ଯାହାର ନାମ-ରବି କଳୁଷ-ଅନ୍ଧକାର ଅଲକ୍ଷେ ଦୂର କରେ, ସେହି ଗୋପୀ-କୃଷ୍ଣ ପାଦପଦ୍ମକୁ ଧ୍ୟାନକରି ବେଳକୁ ସାବଧାନ ହୁଅ ।



## ବିଂଶ ପରିଚ୍ଛେଦ ।



କୁଞ୍ଜକୁଟୀରେ ଫୁଲଶେଯ ଉପରେ ଗୋପୀବଲ୍ଲଭ ଗୋପୀକୁ ବାମରେ ଘେନି ଉପବେଶନ କଲେ । ସେ ବେଳର ଶୋଭା ବର୍ଣ୍ଣନାତୀତ । କୃଷ୍ଣପଟ୍ଟ ପ୍ରାନ୍ତରେ ସୁବର୍ଣ୍ଣରେଖା, କଳାମେଘ ଧାରରେ ବିଦ୍ୟୁତଲେଖା, ନବତମାଳ ପାଶରେ କନକଲତା, ମର୍କତପିଞ୍ଜରା କୋଣରେ ବସନ୍ତପକ୍ଷୀ-ଶାରିକା ବା ଅର୍ଦ୍ଧଛାୟାଯୁକ୍ତ ଅର୍ଦ୍ଧକୌମୁଦୀ ସଦୃଶ ଗୋପୀକା ଶ୍ରୀକୃଷ୍ଣ ପାର୍ଶ୍ୱରେ ବିରାଜମାନ ହେଲା । ଏକର କରୁଣା ଓ ଅନ୍ୟର ଭାବ ପରସ୍ପରକୁ ଏପରି ଶୃଙ୍ଖଳିତ କଲା ଯେ, ଚୁମ୍ବକ-ଲୌହବତ୍ କେହି କାହାରିକୁ ଛାଡ଼ି କେଣେ ଯାଇପାରିଲେ ନାହିଁ । ଶ୍ରୀହରି ଗୋପିକାର କରରେ କର ଦେଇ ଓ ତାହାର ଭାବ-ବିଭୋର ନୟନରେ କୃପାଲୋଳଲୋଚନକୁ ମିଳାଇ ମଧୁର ସ୍ୱରରେ ଏହି-ପରି ଗୂଢ଼ବଚନ ଆରମ୍ଭ କଲେ ।

"ଗୋ 'ପ୍ରେୟସି !' ତୁମ୍ଭଙ୍କୁ ମୁଁ କଣ ବୋଲି ଡାକିବି ? ତୁମ୍ଭେ ମୋର କୁସୁମଗଭା ବୋଲି କହନ୍ତି, କିନ୍ତୁ ସେ ତ ମଉଳିଯାଏ, ଏବଂ ଲୋକେତ ତାକୁ ପକାଇ ଦିଅନ୍ତି । କପାଳତିଳକ କହନ୍ତି, ମାତ୍ର ତାହା କାଳିଯାକ

ଆସେନାହିଁ, ମୋ କଳାଟଭାଳା ପ୍ରତିମା ହୁଅନ୍ତି, କିନ୍ତୁ ସେ ତ ନିଜକୁ ଦେଖାଯାଏ ନାହିଁ; ହାରର ନାମ କଣ୍ଠଭୂଷଣ ନ ହୋଇଥିଲେ, ତୁମ୍ଭକୁ କଣ୍ଠମଣ୍ଡନା ନାମ ଦେଶ ମାନିଥାନ୍ତା। କର୍ପୂର ଚନ୍ଦନ ତ ଶୁଖି ଝଡ଼ିପଡ଼େ, ସୁତରାଂ ତାହା କହିଲାବେଳକୁ ମୋର ହୃଦୟ ପୋଡ଼ୁଛି; ଭକ୍ତି-ତଟିନୀ-ଭେଳା ହୋଇ ପାରନ୍ତି, କିନ୍ତୁ ନଦୀ ପାର ହୋଇଗଲେ କିଏ ଭେଳାକୁ ହେଳା ନ କରେ ? ନିର୍ଦ୍ଧନ ତ ନିଅଣ୍ଟବେଳେ ଧନ ବିକ ଦିଏ, କପର ବା ମୁଁ ତା'ବୋଲି କହିବ ? ତୁମ୍ଭର ମୋର ପ୍ରୀତି ଅନୁପମ। କୁମୁଦ-ଚନ୍ଦ୍ର-ପ୍ରୀତି କହିଲେ ନସରେ; କାହିଁ ଗଗନ, କାହିଁ ସୁମନ ! ସେଥିରେ ପୁଣି ଚନ୍ଦ୍ର କେତେ ତାରା ସେନି କ୍ରୀଡ଼ା କରୁଛି। କମଳ-ସୂର୍ଯ୍ୟ ପ୍ରୀତି ତ ତତୋଧିକ। ଜଳକୁ ଶୁଖିଲା ମାତ୍ରେ ସୂର୍ଯ୍ୟ କମଳକୁ ଦହି ପକାଏ, କମଳ ପୁଣି ବନରେ କେତେ ଭ୍ରମର ସେନି ଖେଳୁଥାଏ। ମଧୁକର କୁସୁମମଧୁ ଚୁମ୍ବିସାରି ଅନ୍ୟ କୁସୁମ ଖୋଜିନିଏ; ତାହାର ତାଛ ବିଚାର ନାହିଁ। କମଳ-କଣ୍ଟକଠାରେ ତାହାର ସମାନ ପ୍ରୀତି। ପ୍ରାଣାଧିକ, କଣ୍ଠଗ୍ରୀବକ ପ୍ରଭୃତି କେତେ ସାନୁରାଗ ବଚନ ଯେ ସଂସାରିଏ କହୁଥାନ୍ତି, ତାହାର କାରଣ ସେମାନଙ୍କ ମଧ୍ୟରେ କେହି ବିବେକୀ ନାହିଁ; କବି ମଧ୍ୟ ସତ ମିଛ କହି କବିତା ଚାତୁରୀରେ ମନ ମୋହନ୍ତି; ଅନିତ୍ୟ ସଙ୍ଗ ଓ ଅସତ୍ୟ ପ୍ରେମକୁ ଅଜ୍ଞ ସଂସାରୀ ଜୀବ ନିତ୍ୟ ଓ ସତ୍ୟ ବୋଲି ମଣି କେତେ ପ୍ରଜ୍ଞାବାଦ କରୁଥାଏ, କେତେ ସ୍ନେହ ବଚନ ଭାଷୁଥାଏ ଏବଂ କର୍ଣ୍ଣରସାୟନ ସଙ୍ଗୀତ ରଚନା କରି ଆପଣାକୁ ତଥା ସଂସାରକୁ ମୁଗ୍ଧ କରୁଥାଏ କିନ୍ତୁ କୋଟି କୋଟି କଳ୍ପବ୍ୟାପୀ ତୁମ୍ଭର ମୋର ଯୋଗ କେବେ ଭଗ୍ନ ହୋଇଛି କି ? ଜଗତର ଅର୍ଥହୀନ କଥାରେ ତୁମ୍ଭର ମୋର ସମ୍ବନ୍ଧ ପ୍ରକାଶ କରି ହେବ ନାହିଁ; ତେଣୁ ନୂତନ ଉପମାର ସୃଷ୍ଟି କରି ପ୍ରକାଶ କରୁଛି ଯେ ତୁମ୍ଭେ ମୋର ବଚନ ବୀଣା, ହୃଦୟ ଏହାର ତୁମ୍ବୀ ଏବଂ ସୁକଣ୍ଠ ଏହାର ତନ୍ତ୍ରୀ। ଭକ୍ତି-ଭାବ-ଆଘାତରେ ସେଥିରେ ଯେଉଁ ନାମ ଶବ୍ଦ ଓ ରାଗରାଗିଣୀ ଜାତ ହୁଏ, ତାହା ଆନନ୍ଦାତ୍ମକ ହୋଇ ମୋର କାମନା ପୂର୍ଣ୍ଣ କରେ।"

କୃଷ୍ଣବାଣୀ ଶୁଣି ଶ୍ରୀମତୀ ଗୋପୀକା କହିଲା,—"ହେ କୃଷ୍ଣ, ଯାହାର କୃପାସିନ୍ଧୁ ନାମର ଏଡ଼େ ମାହାତ୍ମ୍ୟ, ସେ ପ୍ରଭୁ ଦାସବତ୍ସଳ ବାନାହେଲେ ଏ ଦାସୀ କି ନୋହିପାରେ ? ସ୍ପର୍ଶମଣି ଲୁହାକୁ ସୁନା କରେ; କୁସୁମ ସ୍ପର୍ଶରେ ପଟ୍ଟ ସୂତ୍ର ଯାଏ, ସେ କେଉଁ ବଡ଼ଲୋକ ଶିରରେ ନ ବସେ ? ଭସ୍ମର କେଉ ମହତ ଗୁଣଅଛି, କିନ୍ତୁ ପାର୍ବତୀବର ତାକୁ କିଣ ନ କରିଛନ୍ତି ? ଅମୃତ-ଶରୀର କଳାନିଧି କଳଙ୍କକୁ କୋଳରେ ଧରିଅଛି । ପ୍ରଭୁମାନଙ୍କର ଗୁଣ ଅଦ୍ଭୁତ; ନୀଚ ମହତର ଆଶ୍ରୟରେ ଉଚ୍ଚ ହୋଇଯାଏ । ହେ କୃଷ୍ଣ, ଏ କଳଙ୍କିନୀ ପ୍ରତି ତଳେ ହେଲେ କରୁଣା ରଖିଥିବେ; ଆପଣଙ୍କର କରୁଣାବିନ୍ଦୁ ଏ କ୍ଷୁଦ୍ରାଦପି-କ୍ଷୁଦ୍ରଜନପକ୍ଷରେ କରୁଣାସିନ୍ଧୁ ଅଟେ । କେତେ କୁମୁଦ ଓ କେତେ ତାରକା ଅଛନ୍ତି ସତ୍ୟ, କଳାନିଧିର କଳାଏ ସୁଧା ଚକୋରକୁ ତୋଷ କରିବାପାଇଁ ଯଥେଷ୍ଟ, ସକଳ ଲୋକ ମେଘକୁ ଆଶା କରିଥାନ୍ତି ସତ, କିନ୍ତୁ ବିନ୍ଦୁଏ ବାରି ଚାତକର ସନ୍ତୋଷବିଧାନପାଇଁ ପର୍ଯ୍ୟାପ୍ତ ।" ଏହା ଶୁଣି କୃଷ୍ଣ କହିଲେ,"କାହାକୁ କାହା ସଙ୍ଗରେ ଲକ୍ଷ୍ୟ କରୁଛ; ଅସ୍ଥି ଉପରେ ରତ୍ନ ସ୍ଥାପନ କଲେ, ଅସ୍ଥିର ଶୋଭା ବର୍ଦ୍ଧିତ ହୁଏ ନାହିଁ କି ? ତାହାର ପ୍ରଭା ଉଜ୍ଜ୍ୱଳତର ଦିଶେ ନାହିଁକି ? ଲୋକମାନେ ତୁମ୍ଭ ନାମକୁ ଆଗରେ ଓ ମୋ ନାମକୁ ପଛରେ କହି କଳି-କଳୁଷ ଓ ଭବ ଭୟରୁ ପ୍ରତ୍ୟକ୍ଷ କୃତାର୍ଥ ହୋଇ ତରି ଯାଉଛନ୍ତି । ତୁମ୍ଭର ନାମଶକ୍ତିରେ ମୋ ନାମ ଶକ୍ତିଶାଳୀ !"

ଏହିପରି ଅନେକ ସ୍ନେହଭାଷଣ କରି ୨ ଗୋପୀକୁ ଆଦର କରି ଶ୍ରୀକୃଷ୍ଣ ସେଠାରୁ ଗମନ କଲେ । କନକଲତା ନବତମାଳ ସଙ୍ଗରେ ଭକ୍ତି-ମଣ୍ଡଳରେ ଗତି କଲା କି ? କଳାମେଘ ଆଗରେ ବିଦ୍ୟୁତ୍ ଉଦିତ ହୋଇ କାନନଗଗନରେ ଖେଳିଗଲା କି ? ଅବା ଅନଙ୍ଗ ଅଙ୍ଗପାଇ ଯୋଗେଶ୍ୱରଙ୍କର ଯୋଗ ଭଙ୍ଗ କରିବାପାଇଁ ଧନୁଶର ପକାଇ ରତିକୁ ଆଗରେ କରି ଯାଉଥିଲା ? କମଳକୁ କମଳ ବାନ୍ଧିଲା ପ୍ରାୟ ଚରଣପଦ୍ମ-ଚତୁଷ୍ଟୟ ଗମନକାଳରେ ଉତ୍ଥିତ ପତିତ ହେଲା । ମହୀ କି ଭାଗ୍ୟ-

ଚଳନରେ କି ତପ କଲା ଯେ କମଳ ସ୍ଥଳରେ ପ୍ରଫୁଲ୍ଲିତ ହେଲା । କୁସୁମିତ ବଲ୍ଲରୀ ପବନରେ ଚାଳିତ ହୋଇ କିଶୋର କିଶୋରୀଙ୍କ ଉପରେ ଚାମର ଢାଳିଲା । କେଉଁ ଲତା ଫୁଲ-ପାଖୁଡ଼ା ଖସାଇ କୁସୁମ-ବୃଷ୍ଟି କଲା । କେଉଁ ବ୍ରତତୀ ଫଳଭରାବନତ ହୋଇ ଗୋପୀକୃଷ୍ଣଙ୍କୁ ନମସ୍କାର କଲା । ଲତାଟିଏ ତିର୍ଯ୍ୟକ୍ ହୋଇ ତରୁ ଉପରକୁ ଉଠି ଥିବାର ଦେଖି କୃଷ୍ଣ କହିଲେ, "ଦେଖ, ଏ ଲତା କୁସୁମ-ସ୍ତବକରେ ମହାଶୋଭିତା ହୋଇ ତରୁ ଉପରେ କିପରି କମନୀୟ ଦିଶୁଅଛି ।"

ଅନନ୍ତର କିୟତ୍କାଳ ଆନନ୍ଦରେ ଭ୍ରମଣ କଲାପରେ ଗୋପୀ କ୍ଳାନ୍ତ ହୋଇ କହିଲା,—"ପାଦ ଆଉ ଚଳୁନାହିଁ; ମୁଁ କିପରି ଗମନ କରିବ ?" ଭକ୍ତବତ୍ସଳ ଭାବଗ୍ରାହୀ ତନ୍ତୁଁ ହସି କହିଲେ,—"ଖେଦ କରନାହିଁ, ମୋର ସ୍କନ୍ଧ ଅବଲମ୍ବନ କର ।" ଶ୍ରୀକୃଷ୍ଣ ଏହା କହି କିଙ୍କର ପ୍ରାୟ ସ୍କନ୍ଧ ଦେଖା-ଇଲେ ଏବଂ ଗୋପୀ ତାହା ଅବଲମ୍ବ କଲା ।

ଭକ୍ତି କି ଏପରି ବଶ କରିପାରେ ! ହେ ସାଧୁଜନମାନେ, ବିଚାର କରି ଦେଖ, ଭକ୍ତି ଏ ବ୍ରହ୍ମସଂସାରରେ କିପରି ସାର ।

## ଏକବିଂଶ ପରିଚ୍ଛେଦ ।



କେଶବ ସ୍କନ୍ଧକୁ ଅବଲମ୍ବନ କରିଥିବା କାଳରେ ବ୍ରଜରମଣୀ ମନେ ମନେ ବିଚାରକଲା,—"ବେଣୁପାଣି ମୋତେ କି ସ୍ନେହ କଲେ ! ବହୁଭକ୍ତ-ନାୟକଙ୍କୁ ମୁଁ ମୋ ପ୍ରତି କିପରି ଅନୁକୂଳ କଲି ! ମୋର ଆଣିକୁ ଧନ୍ୟ ! ତାଙ୍କର କେତେ ପ୍ରିୟ ନାହାନ୍ତି, କିନ୍ତୁ କେହି ତାଙ୍କର ମନ ହରଣ କରି ପାରିଲେ କି ? ମୋତେ କିପରି ଭାବଗ୍ରାହୀ ଫୁଲଗଭା ପ୍ରାୟ କରିଛନ୍ତି ! ଧନ୍ୟ ମୋ ଭକ୍ତି !"ଭଗବାନ ସବୁ ସହନ୍ତି, ମାତ୍ର କାହାର ଗର୍ବ ସହିପାରନ୍ତି

ନାହିଁ । ଗର୍ବଗଞ୍ଜନ ଶ୍ରୀକୃଷ୍ଣ ଗୋପୀର ଗର୍ବ ଜାଣି ତାହା ଖର୍ବ କରିବା ପାଇଁ ଗୋଟିଏ ଉପାୟ କଲେ, କାରଣ ଗର୍ବହିଁ ଭକ୍ତର ମହାଅନ୍ତରାୟ ଏବଂ ପତନର ମୂଳକାରଣ । ଗର୍ବ ଦୂର ନକଲେ କାହାର ସୁଗତି ଘଟେନାହିଁ; ଏଣୁ କର ଛଡ଼ାଇ ଦୟାମୟ କହିଲେ, "ତୁମ୍ଭେ ଏହିଠାରେ ବିଜୟକର; ମନରେ କିଛି ଭୟ କରିବନାହିଁ; ମୁଁ କୁସୁମ ଚୟନ କରୁଅଛି ।" ଏହିପରି କପଟ ମଧୁର ବଚନ କହି ମାୟାମୟ ହରି ବୃକ୍ଷ ଅନ୍ତରାଳରେ ଅନ୍ତର୍ହିତ ହେଲେ । ନିଜର ଚେଷ୍ଟା ଓ ଅଭିଜ୍ଞତା ଦ୍ୱାରା ଯେଉଁ ପରପକ୍ୱ ଜ୍ଞାନ ଲାଭ କରାଯାଏ, ତାହା ଶିଖାଇଦେବା ବିଦ୍ୟାଦ୍ୱାରା କଦାପି ଆୟତ୍ତ ହୁଏନାହିଁ ବରଂ ତାହାଦ୍ୱାରା ବେଳେ ବେଳେ ବିପରୀତ ଫଳ ଘଟିଥାଏ । କୃତକର୍ମର ଫଳ ଭୋଗକରି ଗୋପୀ ଉପଯୁକ୍ତ ଶିକ୍ଷା ଅର୍ଜନକରୁ ଏବଂ ଗର୍ବ ପରିହାର କରୁ, ଏହା କାମନା କରି ଗୁରୁଙ୍କର ଗୁରୁ ଭଗବାନ ପ୍ରତ୍ୟକ୍ଷ ଭାବରେ ତାହାକୁ ତାହା କହି ନ ଦେଇ ପରୋକ୍ଷଭାବରେ ତାହା ସାଧନ କରିବା-ପାଇଁ ଯତ୍ନବାନ ହେଲେ ।

ଏଣେ ଗୋପୀ ଗର୍ବୋତ୍ଫୁଲ୍ଲ ମନରେ ଶ୍ରୀକୃଷ୍ଣଙ୍କୁ ଅନାଇଁ ବସି-ରହିଲା । ମାତ୍ର ଲୋଭୀ ଯେପରି କୁଟଣ ସାମନ୍ତ-ବୋଲରେ ଆଶାକରି କାଳ କାଟେ ଏବଂ ପରିଣାମରେ ହୃଦୟରେ କଷ୍ଟମାନ ସଞ୍ଚୟକରେ, ସେହିପରି ଗୋପୀ କୃଷ୍ଣ-ଆଶାରେ ଅପେକ୍ଷା କରି କରି ଦୀର୍ଘକାଳପରେ ଦୀର୍ଘ ନିଃଶ୍ୱାସ ମୁଞ୍ଚିବାକୁ ଲାଗିଲା । ବେଦନା ପ୍ରବଳତର ହେଲା; କହୁଁ କହୁଁ କୋମଳ ହୃଦୟ ଓ ସୁରଙ୍ଗ ଅଧର ଲଜ୍ଜା-ଦୁଃଖର ଆଶଙ୍କାରେ କମ୍ପିବାକୁ ଲାଗିଲା, ଏବଂ କୋକନଦ-ଜିତ ନୟନରୁ ଅଶ୍ରୁଜଳ ଶୋକାବେଗରେ ଗଳିବାକୁ ଲାଗିଲା । ସେ କୁରରୀ ସମାନ ରୋଦନ ବଢ଼ାଇ କହିଲା,—"ହେ ମୋହନ, ପ୍ରଫୁଲ୍ଲ-ପଦ୍ମ-ବଦନରେ ସୁଧାସମ ବୋଲରେ କି କହି ନ କଲେ ? ହେ କରୁଣାସଦନ, ମୁଁ ବହୁତ ଭରସା କରିଥିଲି; କିନ୍ତୁ ମୋର କି ଦୁର୍ଦ୍ଦଶା ଯେ ଆପଣ ସେ ପ୍ରତିଆଶା ନାଶ କରି କରୁଣା-ବୃକ୍ଷରେ ନିରାଶ-ଫଳ ଫଳାଇଲେ; ହେ କରୁଣାସମୁଦ୍ର, ସମୁଦ୍ର ପ୍ରାୟ କାହିଁକି ମୋତେ

କୂଳରେ କଣ୍ଟୁଡ଼ିଲେ; ହେ ନିସ୍ପୃହ, ନିସ୍ପୃହପ୍ରାୟ ପ୍ରେମଲତାକୁ ମୂଳରୁ ଛାଡ଼ିଦେଲେ ! ଯେ ଯାହାକୁ ସ୍ନେହପାତ୍ର କରିଥାଏ, ତାହାର ତାହାକୁ ବିରହାନଳରେ ଦହିବା ଉଚିତ କି ? ପ୍ରଭୁ ଯଦି କେବଳ ଅବଧି କରନ୍ତି, ତେବେ ତାହା ବିଧି ବୋଲି ଭ୍ରମ ହେବା କେତେ ମାତ୍ର; ହେ ପ୍ରଭୋ, ବିରହର ଅମିତ କପରି ସହିବ ? କାହାକୁ ବା କହିବ ? ବିରହର ସ୍ଥିତି ଠିକ୍ ଅଗ୍ନିର ସ୍ଥିତି ପରି; ଯେ ଅଗ୍ନିକୁ ବା ବିରହକୁ ଆଶ୍ରୟକରେ, ସେ ତାହାକୁ ଦହିପକାଏ; ବିରହଚିନ୍ତା କଳେବରସ୍ଥିତ ପ୍ରେତଗଣ ପରି ଦିବସ ରଜନୀ ବିରହୀର ଶତ୍ରୁ ହୁଏ; ଚିତା ହିନା ପ୍ରାଣୀ ମଲେ ତାହାର ଶବକୁ ଜାଳେ, ମାତ୍ର ଏ ଚିନ୍ତା ଜୀବ ଥାଉଁ ଥାଉଁ ଜୀବକୁ ଭିତରେ ଭିତରେ ଦହନକରେ; ହେ ହରି, କିଣିଲା ସେବକକୁ ଏପରି ଶୋକ ଦେବା କି ଉତ୍ତମ ବେଭାର ? ସେବା କଷ୍ଟିତ ହେଲେହେଁ ତାହା ଗୁଣଗ୍ରାହୀ ପ୍ରଭୁମାନଙ୍କର ଘେନିବା ଉଚିତ; ଆପଣ ପ୍ରଭୁ ହୋଇ ମଧ୍ୟ ଏପରି ଅବେଭାର କଲେ ! ଏଠାରେ ମୋ ସଙ୍ଗରେ କେହି ନାହିଁ; ଏ ଘୋର ବନସ୍ତରେ କେଉଁଆଡ଼େ ଯିବି ?" କାମିନୀ ଏହିରୂପ କାତର ବଚନ କହି କପାଳରେ କର ମାରି ଚନ୍ଧର ଚିନ୍ତା କଲା ।

ତେଣେ କଳାକରମୁଖୀ ଗୋପିକାମାନେ କୃଷ୍ଣଙ୍କୁ ନ ଦେଖି ଦୁଃଖିତା ହେଲେ ଏବଂ କୁଞ୍ଜେ କୁଞ୍ଜେ ପ୍ରବେଶକରି କୁଞ୍ଜବିହାରୀଙ୍କୁ ଖୋଜି ଖୋଜି ଏହିପରି ନିବେଦନକଲେ, "ହେ ମୋହନ, ଆମ୍ଭମାନଙ୍କୁ କାହିଁକି ଉପେକ୍ଷି ଗଲେ ? ଆମ୍ଭେମାନେ ତ କିଛି ଦୋଷ କରିନାହୁଁ, ଆମ୍ଭମାନଙ୍କୁ ଏଡ଼େ ନିରାଶ କଲେ କାହିଁକି ? କରୁଣାକୃପଣ ହେଲେ ପ୍ରଭୁ-ପଣ-ଲକ୍ଷଣର କି ଯଶ ହୁଏ ? କଳାବନ୍ତ ପ୍ରାଣୀ ଶୋକ ଦେବା କଥାରେ ସହଜରେ ଆଗଭର ହୋଇଥାଏ; ଭ୍ରମର କୁସୁମକୁ ଚୁମ୍ବନକରି ରସ ଗ୍ରାସକଲା ମାତ୍ରେ ଆଉ ପାଖ ମାଡ଼େନାହିଁ; କାକ କାଳକ ପିକକୁ ପୋଷି କାଳକ୍ରମେ ଶୋକହିଁ ଅନୁଭବ କରେ, କଳାନାଗ-ଗତି ଅତିହିଁ ଅନୈତିକ, ସେ କେତେବେଳେ ସରଳ ଗଡ଼େନାହିଁ, ପଦୃଃ ଦେଲେ ପ୍ରବଳ ହୁଏ, ପୁଣି ସେହି ଗୋପନ୍ତା

ଲୋକ ସେ କୁଟିଳ ନାଗର ବଶ ହେଲେ, ସେ ଦଣ୍ଡକେ ତାହାର ଶରୀରକୁ ପଞ୍ଚଭୂତରେ ତରଳାଇଦିଏ; ହେ କୃଷ୍ଣ, ଆପଣ ଏହିମତ ଗୀତ ଜାଳ ଦେଇ ଆମ୍ଭମାନଙ୍କୁ ବିକଳ କରୁଅଛନ୍ତି । କାନନମଧ୍ୟରେ ରଜନୀ ଅର୍ଦ୍ଧରେ ଆନନ୍ଦରେ ମାତି ଭଲା କିଏ କାହାକୁ ଏହିପରି ମାରେ ?" ଗୋପୀମାନେ ଏହି କଥା କହି କହି ରହି ରହି ପାଦପମାନଙ୍କୁ ଧୀରେ ଧୀରେ ପଚାରିବାକୁ ଲାଗିଲେ ।

"ହେ ପାଦପମାନେ, କୁଳଶହୃଦୟ ପଦ୍ମପଳାକ୍ଷ କେଉଁଠାକୁ ଗଲେ ? କୁଳଛଡ଼ା ବଂଶୀ—ଡ଼ାକରେ ଦଉଡ଼ି ଆସି ଦୁଃଖ-ସମୁଦ୍ରରେ ବୁଡ଼ିଲୁଁ ସିନା ? କୁଳ, ଶୀଳ ଓ ଲଜ୍ଜା ଛାଡ଼ି କପଟିଆର କି କପଟ କୁହୁକରେ ପଡ଼ିଲୁଁ ! ହେ କଦମ୍ବ, ବିଳମ୍ବ ନକରି କହ, ତୁମ୍ଭ ମୂଳସ୍ଥା, ତୁମ୍ଭ ଫୁଲମାଳୀସ୍ଥା, ତୁମ୍ଭ କୁସୁମଦୁକୂଳୀସ୍ଥା କାହାନ୍ତି ? ସେ ଅପବାଦ ଅଣାଇ କି ପ୍ରମାଦ ଘଟାଇଲେ ! ହେ ତମାଳ, କୁବଳୟଦଳ-ନେତ୍ର ଏ ବାଟରେ କାହାର ସଙ୍ଗରେ ମନ ଉଚ୍ଚାଟରେ ଗଲେ କି ? ତାଙ୍କ କଥା ତୁମ୍ଭଙ୍କୁ କଣ କହିବୁଁ; ଆମ୍ଭମାନଙ୍କୁ ସେ କେବଳ କପଟରେ ନାଶ କଲେ । କମଠ ଯେପରି ନିଜର କୋଷ ପାଳେନାହିଁ, ଦାସବତ୍ସଳ ସେହି ପ୍ରକାର ଆମ୍ଭମାନଙ୍କୁ କଲେ । ଦକ୍ଷିଣ କଦାପି ଅଦକ୍ଷିଣ ହୁଏ ନାହିଁ, ଏବେ ଜାଣିଲୁଁ ସେ ପ୍ରକୃତ ଶଠ; ଆମ୍ଭମାନଙ୍କର ଏ ସନ୍ତାପରେ ତୁମ୍ଭର ସହାନୁଭୂତି ଅଛି ନା ? ତୁମ୍ଭେ ଯେ ତାଙ୍କର ମିତ୍ର; କଳାରେ ତ ଦୁହିଁଙ୍କର ଦେହ ସମାନ । ଦୁହେଁ ମଧ୍ୟ ହୃଦଦେଶରେ ଦ୍ୱିଜପଦ ଧାରଣ କରିଅଛ; ଦେଖୁଛୁଁ କାହାରି ହୃଦୟ କୋମଳ ନୁହେଁ । କେହି ଆମ୍ଭମାନଙ୍କର ବିକଳ ବାଣୀ ଶୁଣୁନାହିଁ । କର୍ମ ଅବଳରେ ଯାତନା ବେଳରେ ଅମୃତ ମଧ୍ୟ ଗରଳ ହୁଏ ।" ତଦନନ୍ତର ଅଶୋକକୁ ଅନାଇଁ କହିଲେ, "ହେ ଅଶୋକ, ଆମ୍ଭମାନଙ୍କର ଶୋକ ଛଡ଼ାଅ; କଥା ନ କହି ମୂକ ହେଲ କିଆଁ ? ଯେପରି ରାକ୍ଷସ ଓ ମଙ୍ଗଳଗ୍ରହ ଯଥାକ୍ରମେ ଅପୁଣ୍ୟ ଜନ ଓ ଅଶୁଭଗ୍ରହ ହେଲେ ସୁଦ୍ଧା ପୁଣ୍ୟଜନ ଓ ମଙ୍ଗଳଗ୍ରହ ବୋଲି ନାମ ପାଇଛନ୍ତି, ତଦ୍ରୂପ ତୁମ୍ଭେ ହୁକୃତ

ଶୋକବର୍ଦ୍ଧନ ହେଲେ ସୁଦ୍ଧା ତୁମ୍ଭର ଅଶୋକ ବୋଲି ନାମ ଠିକ ରହି-ଅଛି । ଯେ ଦୁଃଖ କାଳରେ ଶୋକ ଆଣେ, ଅବିବେକ ବିଧି ଅବଗୁର କରି ତାହାକୁ ଅକାରଣରେ ଅଶୋକ ନାମ ଦେଲେ କାହିଁକି ?" ତହୁଁ ଗୋପୀମାନେ କ୍ରୋଧଭର ହୋଇ କଷ୍ଟେ କଷ୍ଟେ ଯାଇ କରୁଣାକୁ କହିଲେ. "ହେ କରୁଣା, କୃପାସିନ୍ଧୁ ସମସ୍ତ କରୁଣା ଛାଡ଼ିଲେଣି; ଦୋଷ ତ କିଛି କରିନାହୁଁ; ତଥାପି ସେ ନିଘଣ କରି ଆମ୍ଭମାନଙ୍କର ସବୁ ଫୁରୁଣା ଭାଙ୍ଗି-ଲେଣି । ଏ ଜଣା ଦାସୀମାନଙ୍କ ଉପରେ ସେ ଏତେ ବିରାଗୀ ହେଲେ କାହିଁକି ? ସୂର୍ଯ୍ୟ ନିଜ ମଣିକୁ ଦହନ କଲେ ମଧ୍ୟ ସେ ସୂର୍ଯ୍ୟଙ୍କର ନୁହେଁ କି ? କେହି କୃଷ୍ଣ-ସମ୍ବାଦ ଦେଇ ଆମ୍ଭମାନଙ୍କର ମନୋବ୍ୟଥା ଛଡ଼ାଇ ପାରିଲେ ନାହିଁ । ତୁମ୍ଭେ କି କଠୋରହୃଦୟ ଓ ନିର୍ଦ୍ଦୟ ହେଲ କି ? ତୁମ୍ଭଠାରେ ତେବେ କାର୍ଯ୍ୟସିଦ୍ଧି ହେବ ନାହିଁ । ତୁମ୍ଭଙ୍କୁ କିଏ ଉପକାରୀ ବନ୍ଧୁ କହେ; ବାର୍ତ୍ତା ପଚାରି ପଚାରି କଣ୍ଠ ଶୁଖିଲାଣି, ଅଥଚ ତୁମ୍ଭେ କିଛି କହୁନାହିଁ । ଶ୍ରୀରଙ୍ଗ ଆମ୍ଭମାନଙ୍କୁ ଅବୋଧ ବାତୁଳ ପ୍ରାୟ କରିବାରୁ ସିନା ଆମ୍ଭେମାନେ ଏତେ ସରି ହେଲୁଁ ।"

ଏ ସଂସାର-ଗହନରେ କେତେ ବଳବୀର୍ଯ୍ୟଦୃପ୍ତ ପୁରୁଷ ବିନମ୍ରତ ପ୍ରାୟ ମସ୍ତକ ଉତ୍ତୋଳନ କରି ନାହାନ୍ତି ! କେତେ ଶୋଭାବତୀ ଲଳନା-ବ୍ରତତୀ ନୟନ-ତାପ-କାଶ ହୋଇ ନାହାନ୍ତି ! କିନ୍ତୁ ହାୟ, ଭଗବଦ୍‌ବାର୍ତ୍ତା-ଜିଜ୍ଞାସୁଙ୍କୁ କିଏ ସଦୁତ୍ତର ଦେଇ ସତ୍ମାର୍ଗ ଦେଖାଇଦେଇ ପାରେ ? ତରୁ-ଲତା ଗୋପୀମାନଙ୍କୁ ଉତ୍ତର ନଦେଇ ନୀରବ ରହିଲେ, ମାତ୍ର ଏ କୋଟି କୋଟି ନରନାରୀ ପ୍ରେମ-ପଥ ନ ଦେଖିଥିଲେ ସୁଦ୍ଧା ମହାଜ୍ଞାନୀ ପରି ବିପ-ଥକୁ ସୁପଥ ବୋଲି ନିର୍ଦ୍ଦେଶ କରିଦେଇ ଅସଂଖ୍ୟ କୃଷ୍ଣ ଲୋକଙ୍କର ସର୍ବ-ନାଶ ଘଟାଉଅଛନ୍ତି ।

ଶୋକାଭିଭୂତ ଗୋପିକାମାନଙ୍କର ପାଦ ଆଉ ଚାଲିଲା ନାହିଁ । କଳେବର କାତର ହୋଇ କମ୍ପିବାକୁ ଲାଗିଲା । କେତେବେଳେ ସ୍ୱେଦ-ନୀର ବହିଲା । ରୋମାବଳୀ କଣ୍ଟକିତ ହେଲା । କେତେବେଳେ ବାଷ୍ପ-

ଗଦ୍‌ଗଦ କଣ୍ଠରେ ବାକ୍ୟସ୍ଫୁର୍ତ୍ତି ହେଲା ନାହିଁ । କେହି ମସ୍ତରେ ପଡ଼ିଯାଇ କୃଷ୍ଣନାମ ଉଚ୍ଚରେ ଧରି ଗଡ଼ିବାକୁ ଲାଗିଲା; କେଶବ-ସ୍ନେହ ମନରେ ପଡ଼ିବାରୁ ତାହାର ମନ ଆହୁରି ଅଧିକ ପୋଡ଼ିବାକୁ ଲାଗିଲା । କେହି କହିଲା,—"ହେ ଦୁଃଖହର, ଏତେ ଦୁଃଖ କାହିଁକି ଦେଉଛନ୍ତି ? ଅନୁକମ୍ପାକୁ ଆପଣ କେଉଁଠାରେ ଥୋଇଲେ ? କଷ୍ଟ କାଳରେ ସେ ଆମ୍ଭମାନଙ୍କ ପାଖକୁ ଆଇଲା ନାହିଁ; କଣ ତାହା ଏକାବେଳକେ ବର୍ଜ୍ଜନ କରିଛନ୍ତି ?" କେହି କହିଲା,—"ହେ ପୁରନ୍ଦର-ଗର୍ବ-ଗଞ୍ଜନ ମନ୍ଦରଧର, ହେ କେଶି-ଅଘା ବକାରି, କାମିନୀମାନଙ୍କୁ କାନନ ମଧ୍ୟରେ ମାରି ଆପଣ କେତେ ବଡ଼ ଯଶ-ଶ୍ରୀ ଲଭ କରିବେ ? କେତେ ଥର କଷ୍ଟରୁ ଉଦ୍ଧାର କରି ଏବେ କଥାକେ ସବୁ ସୁଖ ସାରିଦେଲେ । ଆପଣଙ୍କ ଅନୁଗ୍ରହ-ପ୍ରଦର୍ଶନ କରିବର-ସ୍ନାନ ବା କୃପଣର ଦାନ ପ୍ରାୟ ପ୍ରଶଂସାର ଅଭାଜନ ହେଲା । ଏବେ ପ୍ରସନ୍ନ ହୋଇ ପୂର୍ଣ୍ଣଚନ୍ଦ୍ରବଦନର ଦର୍ଶନ ଦେଇ ଆମ୍ଭମାନଙ୍କ ହୃଦୟକୁ ସୁଖ-ସଦନ କରନ୍ତୁ । ନିର୍ଦ୍ଦୋଷ ପାଗଳ ହାତରେ ଶାସ୍ତ୍ର ଦେଇ କିଏ ନିଜର ଓ ଶାସ୍ତ୍ରର ଶୁଭ କାମନା କରେ । ସେହିପରି ଆପଣ ଆମ୍ଭମାନଙ୍କୁ ବିରହ ହାତରେ ଦେଇ କିଛି ଭଲ କରୁ ନାହାନ୍ତି । ଭକ୍ତ-ତରୁ କୁସୁମ ନ ଧରୁଣୁ କାହିଁକି ତାହାକୁ ନିରାଶ-କୁଠାରରେ କାଟିଦେଲେ ? ଭକ୍ତଠାରେ ଭଗବାନଙ୍କର ପ୍ରୀତି ଥାଏ ବୋଲି ଯେଉଁ କୀର୍ତ୍ତି ଆପଣଙ୍କର ଥିଲା, ତାହା ଆଜ କାହିଁକି ଲୁଚାଇଲେ ? କୌଣସି ଗୋପୀ ହେତୁ ଅପବାଦ ନାଗରା ବାଜିଗଲା କି ? ସେଥିପାଇଁ ଆପଣ ହଟିଗଲେ କି ? କଥାରେ, କାର୍ଯ୍ୟରେ କି ଚିନ୍ତାରେ କାହାର ଅଯଥା ଅପକୀର୍ତ୍ତିର ପ୍ରକାଶ ହେଲା କି ? ଯେପରି ଜଳରେ ତୈଳବିନ୍ଦୁ ପଡ଼ି ଦେଖୁଁ ଦେଖୁଁ ମାଡ଼ିଯାଏ, ଆପଣଙ୍କର ପହିଲା ସ୍ନେହ ସେହିରୂପ ହୋଇ ସେହିରୂପରେ ଛାଡ଼ିଗଲା !" ଆଉ ଜଣେ କହିଲା,— "ଗୋସାଇଁ, ଏହିଠାରେ ଆପଣଙ୍କର କରୁଣାକର ନାମ ଜଣାଗଲା; କଷ୍ଟ-ଜଳରେ ଯାହା ଆମ୍ଭମାନଙ୍କୁ ଭସାଇଦେଲେ ! ବିରହ-ବୈଶ୍ୱ ବସାଇ ଯାହା ଭଗାରିହସା କଲେ ! ଦାସବତ୍ସଳ ନାମ କାହିଁକି ଆପଣ ବୋଲାଉଛନ୍ତି ? କାମିନୀ-ବଧକାରୀ ସଗ-

ନର ବହିରଙ୍ଗମ ସୁଦ୍ଧା ସହିପାରେନାହିଁ; ଅଥଚ ଆପଣ ମନରେ ଟିକିଏ ଚୋଳ ଛଳ କରୁ ନାହାନ୍ତି ।" କେହି ଗୋପୀ କୃଷ୍ଣ-ସ୍ନେହ-ବିରହରେ ଜଳିବାର ଦେଖି ଅନ୍ୟ ଗୋପୀ ଗୁଳି ଗୁଳି କୋମଳ ପଳାଶପତ୍ର କରରେ ଧରି ତାପନାଶାର୍ଥ ଧୀରେ ଧୀରେ ସ୍ୱଳିଲେ । କେଉଁ ଗୋପୀ ଶୁକପ୍ରାୟ କୃଷ୍ଣନାମ ଧରି ଆଉ ଗ୍ରହିଲାନାହିଁ; ସେ ବିରହ-ବ୍ୟାଧ-ବାଗୁରରେ ପଡ଼ି ହିରଣ୍ଡର କାତର ହେଲା । କେହି କହିଲା, "ମନମୋହନଙ୍କୁ ମନ ଦେବାରୁ ଏପରି ଯାତନା ଜାତ ହେଲା; ଦେହ କରତରେ କରତଳ ପରି ହେଉଛି ।"

କେହି ବୋଇଲା,—"ଯେ ଅଶରୀରୀ ହୋଇ ଅଦୃଶ୍ୟ ଭାବରେ ବାଦସାଧନ କରେ, ଯେ ଚନ୍ଦ୍ରକୁ ସଖାପଣରେ ବରଣ କରି ମଧ୍ୟ ତାହାକୁ ହଟହଟା କରିପାରେ, ଯେ ନିଜେ ଦଗ୍ଧ ହେଲେ ମଧ୍ୟ ଅନ୍ୟର ଅଙ୍ଗାଶ୍ରୟ କରି କୃତଘ୍ନ ପ୍ରାୟ ଆଶ୍ରୟସ୍ଥଳୀକୁ ପୋଡ଼ି ସାରିଦିଏ, ଯେ ସ୍ୱଗୁଣ-ଗ୍ରାମ ହେତୁ କାହାରି ସୁଖ ସହି ନପାରି ସମସ୍ତଙ୍କର ବିଷମପ୍ରମାଦ ଘଟାଏ, ଯେ ଉନ୍ମାଦନ, ଦୁଃଖଦାନ, ଦାହନ, ଶୋଷଣ, ଓ ଉଦ୍ଦୀପନ ଏହି ପଞ୍ଚ କାର୍ଯ୍ୟ ପାଞ୍ଚୋଟି କୁସୁମ ସାହାଯ୍ୟରେ ସାଧନକରି ଇନ୍ଦ୍ର,ଚନ୍ଦ୍ର,ସୂର୍ଯ୍ୟ,ବ୍ରହ୍ମା, ଓ ଶଙ୍କରଙ୍କୁ ସୁଦ୍ଧା ମାନହୀନ କରିପାରେ, ସେହି କନ୍ଦର୍ପର ଦର୍ପୋଚ୍ଛେଦ କୃଷ୍ଣ ମନ୍ତ୍ର ଭିନ୍ନ ଅନ୍ୟ ମନ୍ତ୍ରରେ କଦାପି ହେବନାହିଁ । ହେ କୃଷ୍ଣ, ଆପଣ ଯେଉଁଠାରେ ଥାନ୍ତୁ, ଆପଣହିଁ ଏହି ନୀରକ୍ଷ ଜନଙ୍କର ରକ୍ଷାକର୍ତ୍ତା ଓ ମଙ୍ଗଳଦାତା; ହେ କାମିକାମଦୁଘା, ଆପଣହିଁ କାମଧେନୁ, ଆଉ ଅଧିକ କାଳ ନ ଜଳାଇ ଦର୍ଶନ ଦିଅନ୍ତୁ; କୃପା କରନ୍ତୁ ।"

ଏହିପରି ଖେଦୋକ୍ତି କରୁଁ କରୁଁ ସ୍ଥାନାନ୍ତରରେ ଘନଚକ୍ରର ମଧୁର ଧୀର ନାଦ ଶୁଣି ତାହାକୁ କୃଷ୍ଣ-ମୁରଳୀ-ଧ୍ୱନି ମଣି ଗୋପ-ତରୁଣୀଏ ବୋଦଣ୍ଡରୁ କାଣ୍ଡ ବାହାର ହେଲା ପ୍ରାୟ ଉତ୍ସାହରେ ଧାଇଁଲେ । ଯେପରି ଶୁଣି ଗୁଣିର ଅଭାବରେ ବିକଳ ହୁଏ, ସେହିପରି ଜଣେ ବିପୁଳନିତମ୍ବା ଗୋପୀ ଧାଇଁ ନପାରି ବିକଳ ହେଲା ।

# ଦ୍ୱାବିଂଶ ପରିଚ୍ଛେଦ ।



ସମସ୍ତ ଗୋପୀ ଯାଇ ଅବଲୋକନ କଲେ । ଜଣେ କହିଲା, "ଏ ତ କୀଚକ, ଏ ବଂଶୀପ୍ରାୟ ଆମ୍ଭମାନଙ୍କୁ ଉତ୍ସୁକ କଲା ।" କିଏ ବୋଇଲା,—"ନ କରିବ କାହିଁକି; ଏହା ତ ସେହି ବଂଶ, ସେହି ବଂଶୀଜାତ; କେବଳ ପୀତବାସଙ୍କ କୃପାରୁ ସିନା ବଂଶୀ ଆମ୍ଭମାନଙ୍କୁ ବିଶେଷ ଭାବରେ ଉଲ୍ଲସିତ କରେ ।" ଏପରି ଅପ୍ରତ୍ୟାଶିତ ଭାବରେ ପ୍ରବଞ୍ଚିତ ହୋଇ ହାସ୍ୟ ସମ୍ବରଣ କରି ନପାରି କେହି କାହାର କର ଦେଶରେ କରତାଳି ମାରି କରିକରି ହସିଲା; କେହି ଶୋକାକୁଳ ହୋଇ ବିରସମନରେ ବସିଲା । ଏମନ୍ତ ସମୟରେ ଯେଉଁ ବ୍ରଜାଙ୍ଗନା କୃଷ୍ଣ ସଙ୍ଗରେ କୁଞ୍ଜାନ୍ତରରେ ଥିଲା, ସେ କୀଚକନାଦ ଶୁଣି ଭୋଳ ହୋଇ ସେଠାରେ ଉପସ୍ଥିତ ହେଲା । ତାହାକୁ ଅବଲୋକନ କରି ଜଣେ କହିଲା,—"ଗୋ ଭାଗ୍ୟବତୀ ମୋହିନି, ବହିନ କହ, ମୋହନକୁ କେଉଁଠାରେ ରଖିଅଛ; କି ତପସ୍ୟା କରି କି ମନ୍ତ୍ର ଶିଖିଥିଲ ଯେ ମୋହନକୁ ମୋହିନେଇ ମହାସୁଖରେ ଏ କଳୀକର-ରଜନୀ କଟାଇଲ ।" ଏକଥା ଶୁଣି ଗୋପୀ ଅନୁତପ୍ତ ଭାବରେ ଉତ୍ତର ଦେଲା,—"ଶ୍ରୀକୃଷ୍ଣ ମୋତେ କୁଞ୍ଜରେ ରଖି, କେଉଁଆଡ଼େ ଉପେକ୍ଷି ଚାଲିଗଲେ ।" ଗୋପୀର ଦୁଃଖକାହାଣୀ ଶୁଣି ଜଣେ ଉପହାସ କରି କହିଲା, 'ଆମ୍ଭମାନଙ୍କୁ ଛାଡ଼ି କେଶବ ସଙ୍ଗରେ ପଡ଼ି ସୁଖ ଲୋଡ଼ିବାକୁ ଯାଇ ଉତ୍ତମବାଟ ଭୋଳରେ ଭୁଲିଲ, ଗୋପୀମାନଙ୍କୁ ଯେ ବିକଳ କଲ ତାହାର ଫଳ ବିହି ତୁମ୍ଭଙ୍କୁ ନଦେଲେ କି ? ଭାଗ୍ୟେ ଯା ଆମ୍ଭମାନଙ୍କର ମେଳ ପାଇଛ ! ଭଗବାନଙ୍କର ଭକ୍ତପ୍ରୀତି କଦାପି ସ୍ଥିର ନୁହେଁ; ବରଂ ଆଶୁତୋଷଙ୍କର ଏଗୁଣ କେତେକ ପରିମାଣରେ ଅଛି, ଭଗବାନଙ୍କ କ୍ଷୀର-ସାଗର-ହୃଦୟର ଗମ୍ଭୀରତା କଳି ହୁଏନାହିଁ, ତାହା ପୁଣି ସର୍ବଦା ଚଞ୍ଚଳ ଓ ଅସ୍ଥିର; ଯେପରି ଦ୍ୟୁତବଳ କଦାପି ସ୍ଥିର ନଥାଇ ଏକ ସମୟରେ କେତେକଙ୍କର ହର୍ଷ ଓ କେତେକଙ୍କର ବିଷାଦ ଘଟାଏ, ଭଗବାନଙ୍କର

ଅନୁକମ୍ପା ସେହିପରି ।" ଅନ୍ୟ ଜଣେ ତାହାର କଥାକୁ ଅସଙ୍ଗତ ମଣି ଉତ୍ତର ଦେଲା,—"ଭଗବାନଙ୍କର ଅନୁଗ୍ରହ ହର୍ଷର କାରଣ ସତ୍ୟ, ମାତ୍ର କଦାପି ବିଷାଦର କାରଣ ନୁହେଁ; ଭାଗ୍ୟରେ ଥିଲେ ହୃଦୟରେ ଭାବର ଉଦୟ ହୁଏ, ଏବଂ ଭାବ ଆସିଲେ ଭଗବାନ ଆସନ୍ତି, ସୁତରାଂ ଭାବର ଅଭାବ ହିଁ ଦୁଃଖର ହେତୁ। ଭ୍ରମରର ବିବେକପଣ ଦେଖୁନାହିଁ ? ସେ ବାହ୍ୟସୁନ୍ଦର କିଂଶୁକକୁ ଛୁଏଁ ନାହିଁ, ମାତ୍ର ଅନ୍ତଃସୁଗନ୍ଧ କୁଟଜରେ ବସେ । କନକ କୁସୁମ ହୋଇଥିବ, କିନ୍ତୁ କିଛିମାତ୍ର ସୁବାସ ନଥିବ, ଭାବି ଦେଖିଲ ସେ କି ସୁଖ ଦେବ । ବାସ ନଥିଲେ ସୁବର୍ଣ୍ଣ ଫୁଲ କି ହେବ ? ପୁଣି, କାନନ ମଲ୍ଲିକା କାନନ ମଧ୍ୟରେ ଥାଏ, ସୁବାସ ଥିବାରୁ ସେ କି ସୁଖ ନଦିଏ ? ଏ କନକ-ସୁନ୍ଦର ହୃଦୟ ଯଦି ମୋହନ-ମନ ଉଚ୍ଛନ୍ନ ନକଲା, ତେବେ ଏହାର କି ପ୍ରୟୋଜନ ? ଚକ୍ଷୁ-କର-ଚରଣାଦି ନିଜ ନିଜ କର୍ମକରି ଯଦି ତାହାଙ୍କୁ ଆକର୍ଷଣ କରି ନପାରିଲେ, ତେବେ ସେମାନଙ୍କର ଆବଶ୍ୟକତା କଣ ?"

ଅନ୍ୟ ସଖୀ କହିଲା, "ଯେତେ କହ, କର୍ମହିଁ ସବୁର ମୂଳ, କର୍ମ ଉପରେ ସମସ୍ତ ନିର୍ଭର; ମସ୍ତକରେ ମୟୂର-ପୁଚ୍ଛ, କରରେ କାଇଁଚ-କଙ୍କଣ, ହୃଦରେ କାଇଁଚମାଳା ଓ ଶିରରେ କିଶଳୟପର୍ଣ୍ଣ ମଣ୍ଡନକରି ଜୀବଜୀବନ ଶ୍ରୀକୃଷ୍ଣ ଶୋଭାବନ ଦିଶନ୍ତି; ଏମାନଙ୍କର ତୁମ୍ଭ କଥିତ ଭାବ କେଉଁଠି ଅଛି ? ଏହା କଣ ଏମାନଙ୍କର ପୂର୍ବ ସୁକର୍ମର ସୌଭାଗ୍ୟ-ଫଳ ନୁହେଁ ?"

ଏହିପରି କେହି ଭଗବାନଙ୍କ କରୁଣାର, କେହି ନିଜ ଭାବର ଓ କେହି ସ୍ୱକର୍ମର ଦୋଷ ଦେଇ କୃଷ୍ଣଭାବନା ପ୍ରଗାଢ଼ ଭାବରେ କଲେ; ତହିଁ ସାତ୍ତ୍ୱିକ ଭାବ ଜାତ ହୋଇ ସେମାନଙ୍କୁ ବିମନା କଲା । କାହାର ଦେହ କେତକୀ-ଦଳପରି ଫିକା ଦିଶିଲା, କେହି ନେତ୍ରରୁ ଲୁହ ପକାଇଲା, କେହି ସ୍ତମ୍ଭପରି ନିସ୍ତବ୍ଧ ହେଲା, କାହାର ଅଙ୍ଗ ଥରିଲା, କେହି କଥା କହିବା ଭୁଲିଲା, କାହାର ସ୍ୱେଦ-ପ୍ରବାହ ପ୍ରଖର ହେଲା ଓ ଅଙ୍ଗ କଦମ୍ବ-କେଶର ପ୍ରାୟ କଣ୍ଟକିତ ହେଲା, ଏବଂ କେହି ବା ଅନ୍ତର ସ୍ଥିରକରି

ଶୋକାକ୍ଷିତ ହେଲା । ଜଣେ ଗୋପୀ ତପନ ଭାବ ପାଇ କହିଲା, "ଏ ପ୍ରାଣ ଏତେ କଦର୍ଯ୍ୟ ଦଶା ପାଇଲାଣି, କାହିଁକି ବାହାର ଯାଉନାହିଁ ?" ଅନ୍ୟ ଜଣେ ପଚାରିଲା,—"ଚକ୍ରବାକୀ ଓ ବ୍ରଜନାରୀଙ୍କୁ ଦୁଃଖ ଦେବାପାଇଁ ଅବିବେକ ବିଧି ରଜନୀ ସୃଷ୍ଟି କରିଛନ୍ତି ନା କଣ ?" ଅପର ସଖୀ ସମସ୍ତଙ୍କୁ ଅନୁରୋଧ କରି କହିଲା,—"ଏ କଳାକର କାହିଁକି ମୋର ଦେହ ଦହନ କରୁଛି ? ମୁଁ କଣ ଏହାର ଶତ୍ରୁ ? ଭଉଣୀମାନେ, ଏକଥା ଟିକିଏ ପଚାରି ବୁଝିଲ ।"

ଏ ପ୍ରଶ୍ନ ଶୁଣି ଜଣେ ଗୋପୀ ଉତ୍ତର ଦେଲା, "ସେ ପରା ଗରଳର ଭାଇ, ନ ଦହିବ କାହିଁକି ? ମନ୍ଥନ କାଳରେ ଗରଳ ଓ ଚନ୍ଦ୍ର ଦୁହେଁ ପରା ସମୁଦ୍ରରୁ ବାହାରିଥିଲେ; କୁଟିଳ ହେଲେ କିଏ କାହାର ବଡ଼ାଇ ଛାଡ଼େ ?; ଦହୁଛି କଣ କହୁଛ, ସେତ ପ୍ରାଣ ନେବ ।" ତତ୍ପରେ ଅନ୍ୟ ଜଣେ କହିଲା,—"ଏତ କାହାର ବ୍ୟାଧି ଲେଶ ଲବ ମାତ୍ର ନାଶ କରେ-ନାହିଁ, ତେବେ ଏହାର ନାମ ଔଷଧୀଶ ବୋଲି ଲୋକେ କିପରି ରଖିଲେ ? ବ୍ୟବହାର କଳଙ୍କିତ ହେଲେ, ସମସ୍ତ ଅସାରହୁଏ ଏବଂ ଲୋକ କଳଙ୍କଯୁକ୍ତ ହୁଏ; ଦେଖ, କେତେ ଲୋକର ପୁଅର କେତେ ଦୁର୍ବ୍ୟବହାର; ଯେପରି ବ୍ରାହ୍ମଣ ନିଜର ପଦ୍ମାକ୍ଷୀକୁ ହତ୍ୟାକରି ଓ ବାରୁଣୀପାୟୀ ହୋଇ ସୁଦ୍ଧା ଦ୍ୱିଜରାଜ ବୋଲି ଅନ୍ୟଠାରେ ନିଜର ପରିଚୟ ଦିଏ, ସେହିପରି ଚନ୍ଦ୍ର ପଦ୍ମିନୀକୁ ବିନାଶ କରି ବାରୁଣୀ-ଗାମୀ ହୋଇ ମଧ୍ୟ ନିର୍ଲଜ ଭାବରେ ନିଜକୁ ଦ୍ୱିଜରାଜ ବୋଲି ପ୍ରଚାର କରୁଛି ।" ଆଉଜଣେ ପୁଣି ବୋଇଲା,—"ବିଧାତା ଅବା ଆତ୍ମକର୍ମକୁ 'ଅମୃତକର'ର 'ଅ'କାର ବାହାର କରିଦେଲେ; ଏ ଋକ୍ଷପତି ହୋଇ କେବେ ରୂକ୍ଷ ଓ ଅମଙ୍ଗଳ ବର୍ଷଣ କରୁଅଛି ? ମିଛରେ ସିନା ଏହାକୁ ହିମ-ଦୀଧିତି କହନ୍ତି; ଏ କଳଙ୍କୀ ଗୁରୁପତ୍ନୀ ହରଣ କରି ନିଜର ଦୋଷାକର ନାମ ସିଦ୍ଧ କରିଅଛି; କି ଭାଗ୍ୟ ବଳରେ ଏହା ରାହୁ-କବଳରୁ ବାହାରିଯାଏ ? ସେ କେତୁ ହୋଇଥିଲେ ଏ ଦୁଷ୍ଟ ତାହାର ଗର୍ଭଜଳରେ ପଡ଼ି ସହଜରେ ପୋଡ଼

ମରନ୍ତା ।" ଏ ସମସ୍ତ ଶୁଣି ଶୁଣି ଜଣେ ଗମ୍ଭୀର ସ୍ୱରରେ କହିଲା, "ଯେତେ ଖାଲିଲେ, ସେ ଯେତେ ଛଳବଚନ କହିଲେ, ଚନ୍ଦ୍ରର କଣ ହେବ ? ବରୁଣ-ପୁରରେ ଜନକ-କୋଳରେ ରହିବାକାଳରେ ବାଡ଼ବାନଳରେ ନିଜର କର୍ମବଳରୁ ସେ ଜଳିନାହିଁ, ବରୁଣାଳୟରେ କେତେ ମକର-କୁମ୍ଭୀରାଦି ନାହାନ୍ତି; କିନ୍ତୁ କେହି ତାହାକୁ ଗ୍ରାସକରି ପାରିଲା କି ? ଅଗସ୍ତି ଯେତେ-ବେଳେ ଗଣ୍ଡୁଷରେ ଜଳଧି ଚଳୁ କଲେ, ଚନ୍ଦ୍ର ପଣ ଯୋଗବଳରେ ତହିଁରୁ ଶୂନ୍ୟରେ ଖସିଗଲା; କୋଟି କୋଟି ଦେବତା ତାହାର ଷୋଡ଼ଶକଳାରୁ ପ୍ରତିଦିନ କଳାଏ କଳାଏ ଗ୍ରାସ କରି ସୁଦ୍ଧା ତାକୁ ଧ୍ୱଂସ କରି ପାରିଲେନାହିଁ; ଷୋଡ଼ଶ ଦିବସରୁ ସେ କଳାକରୁ ସେ କ୍ରମଶଃ ବୃଦ୍ଧିପାଇ ପୁଣି ପୂର୍ଣ୍ଣଦଶା ଲାଭ କରି ଏବେ ଆକାଶରେ କି ସୁନ୍ଦର ହସୁଛି ଦେଖ; ଗରଳାଶନ ତାହାକୁ ଶିରରେ ଚୂଳ କରି ଗରଳ ତେଜ ଶୀତଳ କରନ୍ତି ।" ଏକଥା ଶୁଣି ଜଣେ କହିଲା, "ମହାଦେବ ତ ଉତ୍ତମବାଟ କଲେନାହିଁ; ତାଙ୍କର ଯେ ମହାଦୁଃଖ ହେବ ।"

ଏହିରୂପେ ଗୋପୀମାନଙ୍କର ବ୍ୟାକୁଳତା କ୍ରମେ କ୍ରମେ ବଢ଼ାଇ ଓ ସେମାନଙ୍କର କଥୋପକଥନ-ଛଳରେ ଅପାରଗୁଣ ଦେଖାଇ ଚନ୍ଦ୍ର ପ୍ରାଚୀ-ମୂଳରୁ ପ୍ରତୀଚୀ-ବଳୟକୁ ସୂଚକରି ଦେଲେ । କୋକମିଥୁନ-କମଳ—ପ୍ରମୋଦନ ପ୍ରଭାତ ପ୍ରାୟ ଉପସ୍ଥିତ ହେଲା । ଗୋପୀମାନେ ନିରାଶ ହୋଇ କହିଲେ,—"ଆମ୍ଭ ଗୋବିନ୍ଦ ଆମ୍ଭଠାରେ ଛଳକଲେ, ସେଥିପାଇଁ ତାଙ୍କୁ କାହିଁକି ନିନ୍ଦିବା; ଆମ୍ଭମାନଙ୍କର କର୍ମମନ୍ଦ ।" ଏହାକହି ସେମାନେ ଯମୁନା-କୂଳରେ ଯାଇଁ ପହୁଞ୍ଚିଲେ । କେତେକ ସ୍ନାନପାଇଁ ଜଳରେ ପଶିବାକୁ ଅଗ୍ରସର ହେଲେ । ସମସ୍ତେ ଜଳକୁ ଚାହିଁ ନିସ୍ତେଜ ଭାବରେ କହିଲେ, "ଗୋ ଯମୁନେ, ତୁମ୍ଭ ପ୍ରାଣମଣି କେଉଁଠାରେ ଅଛନ୍ତି କହିବ କି ? ତୁମ୍ଭେ ତାଙ୍କର ସୁଭଗା, ଆମ୍ଭେମାନେ କେବଳ ଦୁର୍ଭଗା; ସେଥିପାଇଁ ତ ସେ ଆମ୍ଭମାନଙ୍କୁ ଅଲଗା କଲେ; ଓହୋ ! ପୂର୍ବର ସେ ସୌଭାଗ୍ୟ-ଗର୍ବ ଆଜି ଏକାବେଳକେ ସ୍ୱପ୍ନସମ ହେଲା !! କୃଷ୍ଣ-ସର୍ପିଣୀର ସୁବିସ୍ତୃତଫଣା ଭୟଙ୍କର ଲଗୁଡ଼ାଘାତରେ ବିନମିତ ହେଲା, ଓହୋ ଯାତନା !!!"

କଷ୍ଟ-ତରୁ-ପ୍ରଭଞ୍ଜନ ଗୋପିକା-ଗର୍ବଗଞ୍ଜନ ଜ୍ଞାନୀମନେଜ-ଜ୍ଞାନାଞ୍ଜନ ପ୍ରେମିକ--ଚିତ୍ତରଞ୍ଜନ ଭକ୍ତମାନ--ଉଦ୍ଧାରଣ ସଂସାର-ଗତ--କାରଣ ଭଗବାନ ଶ୍ରୀକୃଷ୍ଣ ଗୋପୀମାନଙ୍କର କାରୁଣ୍ୟ ଜାଣି ଦୟା-ପରବଶ ହେଲେ ଏବଂ ରଙ୍ଗଅଧରରେ ମନ୍ଦ୨ ହସି ଧୀରେ୨ କାନନରୁ ବାହାର ହେଲେ । ଅନନ୍ତର ଗୋପୀମାନଙ୍କ ପାଶରେ ଦେଖା ଦେଇ କହିଲେ,—"ତୁମ୍ଭ ଭାବଅଭାବରେ ପାଗଳ ହୋଇ ମୁଁ ବୃନ୍ଦାବନରେ ବଣା ହୋଇଗଲି, ମୋ ଅଦର୍ଶନରେ ତୁମ୍ଭେମାନେ କି ବିଚାର କରୁଥିଲ ?"

## ତ୍ରୟୋବିଂଶ ପରିଚ୍ଛେଦ ।

କୃଷ୍ଣଙ୍କୁ ଦେଖି ଗୋପୀମାନେ ଯାହା ହେଲେ ତାହା କିଏ କଥାରେ କହିପାରେ ? କଳାକର ଦର୍ଶନ କଲେ କୁମୁଦବନ, କୋଟିନିଧି ପାଇଲେ ଦରିଦ୍ରଜନ, ରବିମଣ୍ଡଳ ଦେଖିଲେ କମଳବନ, ବସନ୍ତକାଳ ଆସିଲେ କୋକିଳପ୍ରାଣ, ବା କୃଷ୍ଣମେଘ ଉଦୟରେ ମୟୂର ମନ ଯେପରି ହୁଏ, କୃଷ୍ଣଙ୍କୁ ଚାହିଁ ଗୋପୀମାନେ ସେହି ପ୍ରକାର ହେଲେ । ଆନନ୍ଦରେ ଗଦ୍‌ଗଦ ହୋଇ ଗୋପବାଳାମାନେ କହିଲେ,—"ହେ କୃପାସାଗର କୋଟି ବ୍ରହ୍ମାଣ୍ଡନାଥ ! କୃପାବନ୍ତ ହୋଇ ନିର୍ଦ୍ଦୟ ଭାବରେ ଏ ଦାସୀମାନଙ୍କୁ ଯେ ଏତେ ନିରାଶ କଲେ, ସେଥିରେ କି ଯଶ ହେଲା ? କି ଜୟପତାକା ଉଡ଼ିଲା ?" ତହୁଁ ଶ୍ରୀବତ୍ସସ୍ୱାମୀ ସ୍ମିତହାସ୍ୟ ବଦନରେ କହିଲେ,—"ସୁବେଶ କରିବା-ପାଇଁ କୁସୁମ ଆଶାରେ ତୁମ୍ଭ ନିମିତ୍ତ ବୃନ୍ଦାବନଯାକ କେତେ ବୁଲିଲି; ତୁମ୍ଭେମାନେ ପୁଣି ରୋଷ କରୁଛ ! ମୋର କିଛି ଦୋଷ ନାହିଁ । ତୁମ୍ଭର ଭାବକୋଷରେ ମୁଁ ପୋଷ ମାନିଛି । ଘୋଷକନ୍ୟା ମୋତେ ତୋଷ କରିଛ ।" ଗୋପୀମାନେ ଉତ୍ତରରେ କହିଲେ,—"ଆପଣ ବାମ ହେବାରୁ ବିରହ ତାହାର ଦାଉ ସାଧି ନେଲା; ସେମନ୍ତେ ସେମନ୍ତେ ତାହାର ପ୍ରଚଣ୍ଡ କାଣ୍ଡ ଯାହା ଅନୁଭବ କଲୁଁ, ସେପରି ବ୍ରହ୍ମାଣ୍ଡରେ କେହି କରି ନ ଥିବ ।

ଏପରି ଦଣ୍ଡ ଭଲ କିଏ କାହାକୁ ଦିଏ ?'' କୃଷ୍ଣ ପ୍ରତ୍ୟୁତ୍ତର ଦେଲେ,— "ତାହା ସଙ୍ଗରେ ସମର କରିବ, ସେ କାହିଁ ?''

ଏହିପରି ପରିହାସ ବଚନ କହୁଁ ୨ ଭଗବାନ ଶ୍ରୀକୃଷ୍ଣ ବନ୍ଧୁକାମ୍ୟ ହେଲେ ଏବଂ ଗୋପୀ-ଭକ୍ତ ଦ୍ୱାରା ଗୃହୀତ ହୋଇ ଗୋପୀଭକ୍ତଙ୍କର ଭାବବିଚିତ୍ର, ପ୍ରେମଜନକୋଜ୍ଜ୍ୱଳହୃଦୟରେ ନନ୍ଦଘୋଷ ରଥରେ ମହାରଥୀ ଜଗନ୍ନାଥ ପ୍ରାୟ ସମକାଳରେ ଆବିର୍ଭୂତ ହୋଇ ବିରାଜମାନ ହେଲେ । ବ୍ରଜବାଳାମାନେ ସ୍ପନ୍ଦନହୀନ ହେଲେ, କଳାମେଘରେ ଚଞ୍ଚଳା ସ୍ଥିର ହେଲା । କଳଧୌତରେ ଖଦ୍ୟୋତ, କମଳରେ ଭ୍ରମର ବା ହେମବଲ୍ଲରୀମାଳରେ କୋକିଳ ଖେଳିଲା । ଅନ୍ତର୍ମୁଖିନୀ ଗୋପୀକାମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ପ୍ରାଣହୀନ ଓ ନିଷ୍କର୍ମ ହୋଇ ଇତସ୍ତତଃ ପଡ଼ିଲାବେଳେ କିଙ୍କିଣୀ କଙ୍କଣାଦି କୂଜିତ ହେଲା । ଆତ୍ମା ପରମାତ୍ମାର ମିଳନ କାଳ ଉପସ୍ଥିତ ହେଲା । ଗୋପୀମାନେ ଥରକୁଥର ଚୈତନ୍ୟ ପାଇ ଥରକୁଥର ଚୈତନ୍ୟ ହରାଇଲେ । ଆତ୍ମା କେତେବେଳେ ଭାବବିହ୍ୱଳରେ ଗଡ଼ି ଗଡ଼ି ଭଗବାନଙ୍କର ଚରଣ ପୀଡ଼ା କଲା; କେତେବେଳେ ପ୍ରେମରେ ମାତି ପରି ପରମାତ୍ମାଙ୍କୁ ଜଡ଼ି ଉଡ଼ି ଧଇଲା । ଭକ୍ତ-ଦାସ ନିରାକାର ଭଗବାନ ସାକାରତ୍ୱ ଗ୍ରହଣ କରି ଆତ୍ମାର ସମଅବସ୍ଥା ବରଣ କଲେ ଏବଂ ଆତ୍ମାସହ ସଖ୍ୟଭାବ ଆଚରଣ କରି ତାହାର ମୁକ୍ତିପଥ ଉନ୍ମୁକ୍ତ କଲେ । ପ୍ରକୃତି ଗୁଣରୁ ଆତ୍ମା ଏକାଦଶେନ୍ଦ୍ରିୟର ସମସ୍ତ ପ୍ରକାର ବିକାରଭାବ ପ୍ରଦର୍ଶନ କଲା, ମାତ୍ର ନିର୍ବିକାର ପରମାତ୍ମା ଅଙ୍ଗାରକୁ ଅଗ୍ନି ପରି ଜୀବାତ୍ମାକୁ ବିକାର-କଳୁଷରୁ ଧୀରେ ଧୀରେ ମୋଚନ କଲେ । ସାତ୍ତ୍ୱ-ଖାତକପ୍ରାପ୍ତ ଆତ୍ମା ଗୁଣେ ଦେଇ ଭାବଗ୍ରାହୀଙ୍କଠାରୁ ଦୁଇଗୁଣ ପାଇଲା । କୃଷ୍ଣ ଓ ଗୋପୀ-ପଟଳ ପ୍ରେମ-ଶାସ୍ତ୍ର କୁଶଳ; କେହି କାହାକୁ ପ୍ରେମରେ ଅତୁଳ ନୁହେଁ । ସେ ଅତୀନ୍ଦ୍ରିୟଦୃଶ୍ୟ ବର୍ଷାକାଳର ମନୋହର ଦୃଶ୍ୟବିଶେଷ ବୋଲି ବୋଧ ହେଲା; କୃଷ୍ଣ କଳାମେଘ, ଗୋପୀ ତଡ଼ିତମାଳ, କେକି-କଳାପ ଇନ୍ଦ୍ରଶରାସନ, କଟିକିଙ୍କିଣୀ ଗର୍ଜନଧ୍ୱନି ଏବଂ କଣ୍ଠହାର ସଲିଳଧାର; ଏହା ଦେଖି ଭକ୍ତ-କୃଷକ ସୁଖୀ

ହୋଇ ପ୍ରେମଲାଙ୍ଗଳରେ ନାମଫାଳ ଯୋଖି ବିଶ୍ୱାସ-ବଳିବର୍ଦ୍ଦ ସାହାଯ୍ୟରେ ଭକ୍ତ-ହୃଦ-କ୍ଷେତ୍ର ଚଷିଦେଲା; ସୁଖନଦୀ କ୍ରମେ ବଢ଼ି ଅନନ୍ତ ପ୍ରେମ-ସିନ୍ଧୁରେ ଯାଇ ପଡ଼ିଲା; ଭକ୍ତ ଭଗବାନଙ୍କର ମିଳନ ହେଲା ।

ଯେ ସ୍ୱୟଂ ପ୍ରେମର ମୂର୍ତ୍ତି ଏବଂ ଭକ୍ତିର ଉତ୍ସ, ତାଙ୍କୁ ଭକ୍ତର ପ୍ରେମ ଓ ଭକ୍ତି କି ମୋହିତ ଓ ଆବଦ୍ଧ କରିପାରେ ? କେବଳ ନିଜ ଇଚ୍ଛାରେ ଓ ନିଜ ଦୟାରେ ଭକ୍ତଠାରେ ଧରା ଦେଇ ସେ ଅନନ୍ତ-ପ୍ରେମ-ସିନ୍ଧୁ-ସୁଧା ପାନ କରାଇ ଭକ୍ତକୁ ଉନ୍ମତ୍ତ ଓ ଅନ୍ଧ କରି ଯେପରି ବନ୍ଧନ କରନ୍ତି ତାହା କିଏ ସନିବନ୍ଧ କହି ପାରିବ ? ଯେ ଭକ୍ତଠାରେ ପରାଜିତ ହୋଇ ଭକ୍ତକୁ ନିଜ ଉପରେ ଉଚ୍ଚ ସ୍ଥାନ ଦେଇ, ଏବଂ ଭକ୍ତକୁ, ନା, ଭକ୍ତର ପାଦକୁ ହୃଦୟରେ ଧାରଣ ଓ ଅନ୍ୟକୁ ଗଳାରେ ମାଳା କରି, ଅଶେଷ ତୃପ୍ତି ଲାଭ କରନ୍ତି ଓ ନିଜକୁ କୃତାର୍ଥ ମନେ କରନ୍ତି, ତାହାଙ୍କ-ଠାରେ ମାନବୀୟ ପ୍ରେମ ଓ ଭକ୍ତି ନିଜର ସମସ୍ତ ଶକ୍ତି ପ୍ରକାଶ କରି ଶେଷରେ ଶକ୍ତିହୀନ ହୁଏ । ଭକ୍ତି କଲେ, ଭଗବାନ ଭକ୍ତ ହୃଦୟରେ କେତେ ଉତ୍ପାତ ଘଟାନ୍ତି । ଭକ୍ତର କାମନା ସମୂଳେ ବିନାଶ କରନ୍ତି । ଦୁର୍ବଳ ପ୍ରାଣୀ ଅତି ପରିଶ୍ରମ ହେତୁ ଝାମ ଗଲା ପ୍ରାୟ ତାହାର ଭକ୍ତି ନିଶ୍ଚେଷ୍ଟ ଓ ନିଷ୍କ୍ରିୟ ପ୍ରତିପନ୍ନ ହୁଏ । ପଶ୍ଚାନ୍ତରରେ ଇଚ୍ଛାମୟ ଭାବଗ୍ରାହୀଙ୍କ କୋଳରେ ଭକ୍ତ କି ସୁଖ ଲାଭ ନ କରେ ? ଯେ ସମସ୍ତ ବ୍ରହ୍ମାଣ୍ଡପିଣ୍ଡକୁ କୃଷ୍ଣ ଦ୍ୱାରା ଆଚ୍ଛାଦନ କରିବାକୁ ଓ ସକଳ ହୃଦୟଦେଶକୁ କୃଷ୍ଣମୟ ଦେଖିବାକୁ ସମର୍ଥ ହୁଏ, କେବଳ ତାହାର ଶରୀର ଓ ହୃଦୟ କ୍ଷୁଦ୍ର ହେଲେହେଁ, ସେ ହିରଣ୍ୟଗର୍ଭବିରାଟ-ପୁରୁଷଙ୍କୁ ଆଚ୍ଛାଦନ କରିପାରେ । ଭକ୍ତ ଏ ଦୁରୂହ ଚେଷ୍ଟାରେ ପୁନଃପୁନଃ ପରାଜିତ ହୁଏ, ତାହାର ବିଶ୍ୱାସ ଓ ଭକ୍ତି ବାରମ୍ବାର ହାରି ମାନେ, ତଥାପି ପରାଜୟ-ଲୁବ୍ଧ ନବ ତେଜରେ ମାତି ଜୀବିତ କାଳ ମଧ୍ୟରେ ବା ଜନ୍ମଜନ୍ମାନ୍ତରେ ଯେତେବେଳେ ସେ କୃଷ୍ଣଙ୍କୁ ନିଜର ହୃଦୟ ଦ୍ୱାରା ଅଧୀନ କରେ ତେତେବେଳେ କୃଷ୍ଣ ଭକ୍ତକୁ ସର୍ବଦା ଦର୍ଶନ କରି ପୂର୍ଣ୍ଣକାମ ହୁଅନ୍ତି ଏବଂ ନିଜ ଉପରେ ଉଚ୍ଚସ୍ଥାନ ଦାନ କରି ତାହା

ସହିତ ବିବିଧ ଛନ୍ଦରେ ଓ ବିଭିନ୍ନ ଭାବରେ କ୍ରୀଡ଼ା କରନ୍ତି । ଭକ୍ତ କି ଆହ୍ଲାଦ ସେ ରସିକଚୂଡ଼ାମଣିଙ୍କ ସହିତ ସମ୍ଭୋଗ ନ କରେ ! ଆଜି ଭକ୍ତଶିରୋମଣି ଗୋପିକାମାନଙ୍କର ସେହି ମିଳନ, ସେହି ଆହ୍ଲାଦ ଓ ସେହି ସୁଖ । ସଂସାର-ସୁଖ-ସମ୍ଭୋଗର ମୂଳ ସଂଯମ; ମାତ୍ର ଏ ମିଳନସୁଖରେ ସଂଯମ ନାହିଁ କି ସୀମା ନାହିଁ ।

ଅନନ୍ତର ଶ୍ରୀକୃଷ୍ଣ କଥିତକାଳ ମିଳନ ସୁଖ ଭୋଗ କରି ପୂର୍ଣ୍ଣ-ମନୋରଥ ହେଲେ ଏବଂ ମନତୋଷରେ ସ୍ୱଇଚ୍ଛାରେ ଗୋପୀମାନଙ୍କୁ ଷଡ଼ୈଶ୍ୱର୍ଯ୍ୟ ଦାନ କଲେ । ତତ୍ପରେ ନାନା ପ୍ରିୟ ସ୍ନେହ ବଚନ କହି ସେମାନଙ୍କର ସନ୍ତୋଷ ଆଣିବାକୁ ପ୍ରଯତ୍ନ କଲେ; ମାତ୍ର ସୁଖକର ବଚନ ଶୁଣିଲେ କିମ୍ବା ଅଣିମା ଲଘିମାଦି ଐଶ୍ୱର୍ଯ୍ୟ ପାଇଲେ କି ଭକ୍ତର ତୁଷ୍ଟି ସାଧିତ ହୁଏ ? ଗୋପୀମାନେ ନିର୍ବାକ ହୋଇ ଧୀରସ୍ଥିର ଭାବରେ ଦଣ୍ଡାୟମାନ ହେଲେ । କେହି କେହି ବକ୍ରଚାହାଁଣୀରେ ଶ୍ରୀକୃଷ୍ଣଙ୍କୁ ଅନାଇ ରହିଲେ । କାମିନୀମାନଙ୍କର କାମନା, ମଦନମୋହନ ଆଉ ସେମାନଙ୍କୁ ତ୍ୟାଗ କରନ୍ତେ ନାହିଁ । ଦେହୀ ଦେହାନ୍ତ ହେଲେ ସୁଦ୍ଧା ତାହାର ଅନ୍ତର କାମନାର ଅନ୍ତ ହୁଏ ନାହିଁ । ମୃଗତୃଷ୍ଣାର ପତଙ୍ଗଧାବନ ଆଶାୟୀ କୁରଙ୍ଗକୁ କଣ ନ କରେ, ତଥାପି ସେ ଯାହାଦ୍ୱାରା ହତ ହେବ, ତାହାରିଠାରେ ମମତା ଲଗାଏ । ଯଦି ପ୍ରାଣୀର ମିଥ୍ୟା-ମୃଗତୃଷ୍ଣାରେ ଏତେ ମମତା, ତେବେ ଉନ୍ମୁକ୍ତ-ପ୍ରାଣା ଗୋପବାଳାମାନଙ୍କର ପ୍ରତ୍ୟକ୍ଷବିଶ୍ୱସୁନ୍ଦର, ସଚ୍ଚିଦାନନ୍ଦ ମଦନମୋହନଙ୍କଠାରେ ପ୍ରଗାଢ଼ତମ ମମତା ହେବା ବିଚିତ୍ର କଣ ?

ଶ୍ରୀକୃଷ୍ଣ କହିଲେ, "ତୁମ୍ଭେମାନେ ମୋର ପ୍ରାଣଧନ; ତୁମ୍ଭର ହୃଦୟରେ ମୋର ମନ ଲାଖି ରହିଲା; କୃପାମୟୀମାନେ, ନିରନ୍ତର କୃପା ରଖିଥିବ; ଏହିପରି ମୋର ଯତ୍ନ କରୁଥିବ ।" ଏରୂପ ଆଦରବାଣୀ ଶୁଣି ଗୋପିକାମାନଙ୍କ ପ୍ରେମ-ପ୍ରବଣ ପ୍ରାଣରେ ପ୍ରୀତି ପୁଣି ପ୍ରଖର ହୋଇ ଉଠିଲା ଏବଂ ପୁଣି ମିଳାଇବା ପାଇଁ ଗୋପୀ କୃଷ୍ଣଙ୍କ ଆଉଥରେ କଣ୍ଠାଳି-ଙ୍ଗନକୁ ଉନ୍ମୁଖ ହେଲା, କିନ୍ତୁ ସମସ୍ତ ଅସମର୍ଥ ଓ ଶରୀର ଅବଶ ହୋଇ-

ଥିଲ । ଯୋଗ ଓ ଧ୍ୟାନ ଯୋଗୀର ଶାରୀରିକ ଓ ମାନସିକ ସୁସ୍ଥତା ଓ କ୍ଷମତା ଉପରେ ପୂର୍ଣ୍ଣ ନିର୍ଭର କରେ; କାଳ ଓ କ୍ଷେତ୍ର ଯୋଗସାଧନାର ଉପଯୋଗୀ ହେବା ଏକାନ୍ତ ଆବଶ୍ୟକ, ତେଣୁ ମନ ହେଉଥିଲେହେଁ ଉଜାଗରକ୍ଳିଷ୍ଟ ଓ ଚଞ୍ଚଳ-ଚିତ୍ତ ଯୋଗୀ ଅସମୟରେ ଯୋଗସାଧନାରେ ନିଯୁକ୍ତ ହୁଏ ନାହିଁ ।

ତେବେଶେ ପ୍ରଭାତ ଆଗମନ କଲା । ତହୁଁ ବ୍ରଜକାମିନୀମାନେ ପ୍ରଭାତ-ଶୋଭା ଘେନ ବ୍ରଜଆଡ଼କୁ ମୃଦୁ ମନ୍ଦ ଗତିରେ ଅଗ୍ରସର ହେଲେ । ଗମନ କାଳରେ ଯେତେବେଳେ କଳାକର-ମୁଖ-କାନ୍ତି ପ୍ରଭାତ-ପ୍ରଭା-ପ୍ରଭାବରେ ନ୍ୟୂନ ଦିଶୁଥିଲା ଏବଂ ତାରକାମାନ ସାମାନ୍ୟ ୨ ଦୃଷ୍ଟ ହେଉଥିଲା, ତେତେବେଳେ ବ୍ରଜାଙ୍ଗନାମାନଙ୍କର ମୁଖଚନ୍ଦ୍ର କ୍ଳାନ୍ତି ଓ ଜାଗରଣ ହେତୁ ମଳିନ ଦିଶୁଥିଲା ଏବଂ ନୟନ-ତାରକା ଅଳ୍ପ ଅଳ୍ପ ଦେଖାଯାଉ ଥିଲା ।

---

## ଚତୁର୍ବିଂଶ ପରିଚ୍ଛେଦ ।

---

ରଜନୀରେ ସୁଖ-ଦୁଃଖ-ତରଙ୍ଗତାଡ଼ିତ ହୋଇ ଗୋପୀସମୂହ କ୍ଳାନ୍ତ ଓ ଅବଶ ହୋଇଥିଲେ । ସେମାନଙ୍କର ଅଙ୍ଗଲତା କରିବର-କର-ମର୍ଦ୍ଦନ-ପ୍ରକ୍ଷିପ୍ତ ପଦ୍ମଲତା ସଦୃଶ ଶୁଷ୍କ ଓ ମଳିନ ଦିଶୁଥିଲା । ଯେପରି ଚମୂରୁ କେଶରୀମୁଖରୁ ପଳାଇ ତରଙ୍ଗ-ଗୃହାଣୀ ଗୃହେଁ, କେହି ଗୋପୀ ଗମନ ବଳାଇ ସଙ୍ଗ ଗ୍ରୀଡ଼ ସେହିପରି କଟାକ୍ଷ ଖେଳାଉ ଥିଲା । କେଉଁମୁଣ୍ଡ ଗ୍ରାସରୁ ସୁଧାଖଣ୍ଡ ତାହାର ନୀରସ ଦିଶିଲା ପ୍ରାୟ ତାହାର ଶ୍ରୀମୁଖ ପ୍ରଭାହୀନ ହୋଇ ଥିଲା । ଶଶୀ ସେମାନଙ୍କ ଶ୍ରୀମୁଖରୁ କଳା ହରି ନେଇ ଚନ୍ଦ୍ରଚୂଡ଼ଙ୍କ ମଥାରେ କାନ୍ତି ଖେଳାଉ ଥିଲା । ତାହାର ନେତ୍ର ସିନ୍ଦୁରମଣ୍ଡିତ କୁବଳୟଦଳ ପରି ଦିଶୁଥିଲା; ତାହାର ସୁରଙ୍ଗ ଅଧର କୀର-ଚଞ୍ଚୁଘାତଚିହ୍ନିତ ବିମ୍ବଫଳ ପରି ଏବଂ ଗଣ୍ଡସ୍ଥଳସ୍ଥ ତାମ୍ବୂଳବୋଳ କନକ ମହୀରେ ସ୍ଥିର ତାମ୍ରଙ୍କଟ ପରି

ଦୃଷ୍ଟ ହେଉଥିଲା । କାହାର ଅଙ୍ଗରେ କଣ୍ଟକମୁନ କରି-କୁମ୍ଭରେ ଅଙ୍କୁଶ-ଘାଟ ଲାଗିରହିଥିଲା । କାହାର କଟିରେ ଅମ୍ବର ଅନାଡ଼ମ୍ବର ଓ ଶିଥିଳ ହୋଇଥିଲା । କୃତ୍ତିବାସ ଶିରରେ ବସୁନ୍ଧଗମାର ସୂକ୍ଷ୍ମଧାରରେ ଢଳା ହେଲା ପ୍ରାୟ, କାହାର କଣ୍ଠ ହାର ସୂତରୁ ବାହାରପଡ଼ ଗୋଟି ଗୋଟି ହୋଇ ଏକରେଖାରେ ଧରଣୀରେ ଖସିପଡ଼ୁଥିଲା । ଏହିପରି ଗୋପୀ-ଜଳହଂସୀ ଉଜାଗର-ଅତିକ୍ଳାନ୍ତ-ଛବି ଧାରଣକରି ମନ୍ଦମାରୁତରେ କନକ-ବଲ୍ଲରୀ ଟଳଲା ପ୍ରାୟ ହୋଇ ଶ୍ରୀଅଙ୍ଗ ଦୋହଲାଇ ଧୀରେ ଧୀରେ ଗୋପରେ ପ୍ରବେଶ କଲେ ।

ସେତେବେଳେ ଉଷାକାଳ ଅତିକ୍ରାନ୍ତ ହୋଇ ପ୍ରଭାତର ଆରମ୍ଭ ହୋଇଥିଲା । ବାସରେଶ କମଳହର୍ଷ ଯେବେ ଉଦୟ-ମୂର୍ଦ୍ଧା ଛୁଇଁଲା ମାତ୍ରେ ଗଗନରେ କନକକିରଣ ସଞ୍ଚାରିତ ହେଲା । ଚନ୍ଦ୍ର ପ୍ରାଣବକଳରେ ଅସ୍ତ-ହୋଇ କି ଛଟକରେ ଗଗନରୁ ପ୍ରସ୍ଥାନ କଲା ! ଖରତର ଜ୍ୟୋତିର ଉଦ-ୟରେ ସ୍ଥାନତର ଜ୍ୟୋତି କ୍ଷଣକେ କେଣେ ବିଲୀନ ହୋଇଗଲା । ସୂର୍ଯ୍ୟ-ଚନ୍ଦ୍ରର ଏ ସମସାମୟିକ ଉଦୟାସ୍ତ ଛବି ଜଗତର ସମକାଳୀନ ସୌଭାଗ୍ୟ-ଦୁର୍ଭାଗ୍ୟର କାରଣ ନୁହେଁତ ? ଚତୁର୍ଦ୍ଦିଗରେ କାକ-କୁକ୍କୁଟ-ଚନ୍ଦ୍ରବାକ-ଡ଼ାକ ଶ୍ରୁତି ଗୋଚର ହେଉଥିଲା । ଜଗତ ନିଦ୍ରା ତ୍ୟାଗକରି ସଜାଗ ହେଲା ଏବଂ ଅନ୍ଧତମ ଦଶା କୋଳରେ ଆଶ୍ରୟ ନେଲା ।

. କମ୍ବୁକଣ୍ଠକରେ ପାହାନ୍ତି ଶଙ୍ଖ ବାଜିଯାଇଥିଲା । ଗୋପୀମିଳନ-ସୁଖ ଭୋଗକରି ସାରି ବିଦାୟ ନେଲା ମାତ୍ରେ କମ୍ବୁକନ୍ଧର ଦେବରାଜଙ୍କର ନିଦ୍ରା ହସ ଭାଙ୍ଗିଲା । ସେ କନକ-ପଲଙ୍କ ତ୍ୟଜି ସିଂହାସନରେ ବିଜୟ-କଲେ । ସେବକ ଦ୍ୱିଜମାନେ ତ୍ୱରିତ ଯାଇ କବାଟ ଫିଟାଇ ପ୍ରଭୁଙ୍କ ପାଶରେ ଖଟିଲେ; କୁସୁମମାଳ ତଳକୁ ପକାଇ ଉତ୍ତମବସ୍ତ୍ର ପରିଧାନ କରା-ଇଲେ । ଦାଢିଲାଗିଯାଇଁ ଚଉକରେ ବିଜୟ କରି ପ୍ରଭୁ ଜିଫଳ-ଜଳରେ ମୁଖ ପଖାଳିଲେ । ତତ୍ପରେ ନୀଳାଦ୍ରିକେଶରୀ ଦାଠିଲାଗି ସ୍ନାନସାରି ଜନମାନ୍ୟବେଶ ଲାଗିହୋଇ ସୁବେଶ ହେଲେ । ଜଉରେ କଚଣୀ, ବାହୁଟୀ

ଓ ମଧ୍ୟ ଦେଶରେ ରହି ଓଡ଼ିଆଣି ଶୋଭା ପାଇଲା । କଣ୍ଠରେ ଶାର୍ଦ୍ଦୂଳ-ନଖକଣ୍ଠିମାଳ ଦର୍ଶକମନ ମୋହନକଲା । କର୍ଣ୍ଣରେ କୁଣ୍ଡଳ, ଶିରରେ ଦିବ୍ୟଚୂଳ ଓ ହୃଦରେ କୁସୁମମାଳ ଯେ ଦର୍ଶନ କଲା ତାହାର ଜନ୍ମ ସଫଳ ହେଲା । କୋଟିବ୍ରହ୍ମାଣ୍ଡରେ ଏପରି ଠାକୁର କାହିଁଥିବାର କେହି ଦେଖିଛ କି ଶୁଣିଛ ? କଶ୍ଚିତ ଲୋକମଧ୍ୟ ତାହାଙ୍କୁ ଗୃହିଁ ପରମପଦ ଲାଭ-କରେ । କଳୁଷୀ ଲୋକଙ୍କୁ କଳୁଷପଙ୍କରୁ ଉଦ୍ଧାରିବା ପାଇଁ କରୁଣାହୃଦୟ ଜଗନ୍ନାଥ ନୀଳାପର୍ବତରେ ବିଜୟ କରିଛନ୍ତି । ସେ କଥା କହନ୍ତିନାହିଁ, ତଥାପି ଜଗତ ମୋହନ୍ତି । ସେ ଚକାଡୋଳା ସର୍ବଜ୍ଞ ସମଦର୍ଶନ ଓ ସେ ଚଉବାହା କାଳଦଣ୍ଡ ଭସ୍ମ ଧ୍ୱସ୍ତ କରିବାପାଇଁ ନିରନ୍ତର ଊର୍ଦ୍ଧ୍ୱବାହୁ । ସେ ନୀଳକନ୍ଦରବାସୀ ଯେଉଁ ଦ୍ରବ୍ୟ ମଣୋହି କରନ୍ତି ତାହାର ମହିମା ବଚନ୍ଦ; କାହିଁ ପାତ୍ରରେ ସେ ଉଚ୍ଛିଷ୍ଟ ଟିକିଏ ଲାଗିଥିବାର ଦେଖିଲେ ଲୋକଙ୍କ କଥା ଦୂରେ ଥାଉ ବ୍ରହ୍ମା ମଧ୍ୟ ତାହା ନେଇ ଆନନ୍ଦରେ ଭକ୍ଷଣ କରନ୍ତି । ଭକ୍ତମାନେ ସେ ମହାପ୍ରସାଦ ଦେଖିଲେ ଛଡ଼ାଇ ସେବାକରନ୍ତି । ସେ ମହାକୈବଲ୍ୟ ପାଇବାରେ ଜାତି ଅଜାତି ଉଚ୍ଚ ନୀଚ କିଛି ବାଛ ବିଚାର ନାହିଁ । ମହାପ୍ରଭୁ ପ୍ରସାଦଦେଇ ଧରାବାସୀ ନର ନାରୀଙ୍କୁ ଏକ ପିତାର ସନ୍ତାନ ବୋଲି ଶିଖାଉଛନ୍ତି । ତାଙ୍କରି ଶିକ୍ଷାରେ ତାଙ୍କର ଇଚ୍ଛାରେ ସେମାନେ ଭେଦଭୁଲି ଭ୍ରାତୃ-ଭଗ୍ନୀ-ସମ୍ବନ୍ଧର ଉଦାରଭାବ ହୃଦୟରେ ପୋଷଣ କରି ବସୁଧାକୁ କୁଟୁମ୍ବବୋଲି ମଣିବେ । ମହାପ୍ରଭୁଙ୍କର ଏ ମହା-ଭାବରେ ଜଗତ କ୍ରମଶଃ ଅନୁପ୍ରାଣିତ ହେଉଅଛି ଏବଂ ପ୍ରେମତରଙ୍ଗ-ହିଲ୍ଲୋଳରେ ବେଳେବେଳେ ନାଚି ଉଠୁଛି । ସଙ୍କୀର୍ଣ୍ଣତା ଓ ଭେଦବୁଦ୍ଧି ପୁଞ୍ଜୀଭୂତହୋଇ ଯେତେବେଳେ ଅଟଳ ଶୈଳପରି ମସ୍ତକ ଉତ୍ତୋଳନକରେ, ସେତେବେଳେ ପତିତପାବନ ଜଗନ୍ନାଥ ଯୋଗଜନ୍ମା ମହାତ୍ମା ପୁରୁଷରୂପେ ଅବତୀର୍ଣ୍ଣ ହୋଇ ଉଜ୍ଜ୍ୱଳ-ପ୍ରେମୋର୍ମି-ସଂଘାତରେ ବା ଜ୍ଞାନାଞ୍ଜନଶଲାକା-ପାତରେ ତାହା ଚୂର୍ଣ୍ଣବିଚୂର୍ଣ୍ଣ କରି ଜ୍ଞାନ-ଭକ୍ତି-କର୍ମ-ହୀନ ଦୀନମାନଙ୍କୁ ମହାପ୍ରସାଦ ଦାନକରନ୍ତି; ମହାପ୍ରଭୁଙ୍କର ମହାପ୍ରସାଦରେ ଏମନ୍ତ ମହା-ଶିକ୍ଷା ନିହିତ ଅଛି । ପୁଣି ମନ୍ଦିର ବେଢ଼ା ଭିତରେ ଗତିକଲେ ପରିକ୍ରମର

ଫଳ, କଳହକଲେ ସ୍ତୁତିର ଫଳ, ଆମିଷ ଭକ୍ଷଣ କଲେ ହବିଷ୍ୟର ଫଳ ଏବଂ ନିଦ୍ରାଗଲେ ଦଣ୍ଡପ୍ରଣାମର ଫଳ ଅଧମଜନ ମଧ୍ୟ ପ୍ରାପ୍ତ ହୁଏ, ଭୃତ୍ୟ-ମାନେ ପୁତ୍ରକଳତ୍ରାଦିସହ ଜୀବନ୍ମୁକ୍ତ ହୁଅନ୍ତି; ସେ ପ୍ରଭୁଙ୍କର ମହିମା ଏମନ୍ତ ବିଚିତ୍ର ।

ଯଦ୍ୟପି ଯାନକୃଷ୍ଣଦାସଙ୍କ ପରି ଜଣେ ଜଣେ ଭକ୍ତ ସେ ଶ୍ରୀକ୍ଷେତ୍ରରେ ନିବାସ କରିବାପାଇଁ ବହୁତ ଆଶା କଲେହେଁ, ପ୍ରଭୁଙ୍କ ଅନୁଗ୍ରହ କାହିଁକି କେଜାଣି ହୁଏନାହିଁ; ଦୁର୍ଭାଗ୍ୟ ବଶତଃ ସେଠାରେ ସେମାନେ ରହି ପାରନ୍ତିନାହିଁ । କର୍ମକର୍ତ୍ତା କୈବଲ୍ୟଦାତା ଯଦି ପ୍ରସନ୍ନ ନହୁଅନ୍ତି, ତେବେ କର୍ମରେ ଯାହା ଥାଏ ତାହାର ଅବଶ୍ୟ ଭୋଗ ହୁଏ; ତାହା ଆଉ କିଏ ଅନ୍ୟଥା କରିପାରେ ? ପ୍ରଭୁ ଅପ୍ରସନ୍ନ ହେଲେ ବୋଲି କି ଭକ୍ତ ଅନ୍ୟର ଆଶ୍ରୟ ନେବ ? ତାଙ୍କଠାରୁ ବଳି ବଡ଼ ଆଶ୍ରୟସ୍ଥଳୀ କାହିଁ ? ସେ ଯେତେ ଦୁଃଖ ଦେଲେ ଦିଅନ୍ତୁ, ଅନ୍ୟ ପାଖକୁ ଭକ୍ତ କଦାପି ଯିବନାହିଁ କି ତାଙ୍କ ନାମକୀର୍ତ୍ତନ ଛାଡ଼ିବନାହିଁ; ଅତଏବ ତାଙ୍କର ଗୁଣକୁ କଣ୍ଠଭୂଷଣ ଓ ନାମକୁ ଭଜନ ଗାୟନ କରି କୃପଣ ଗୁଆଁର କୁବୁଦ୍ଧି ଲୋକକୁ ଧାନ-ମାଗିବା ବା ତାହାଙ୍କୁ ଆଶ୍ରୟକରି ଓ ସୁବିଦ୍ୟା ଆଚରଣ କରି ପାଷାଣ୍ଡକୁ ସ୍ତୁତି କରିବା ଅପେକ୍ଷା ଛାରଜୀବନକୁ ତାଙ୍କ ଚରଣରେ ସମର୍ପଣ କରି ଦରିଦ୍ର ଭକ୍ତର କାଳକ୍ରମେ ପ୍ରାଣ ଛାଡ଼ିବା ଶ୍ରେୟସ୍କର କାରଣ ଏହା କଲେ ଦୁଃଖ ଓ ଅପମାନ ଯେତେ ଶୀଘ୍ର ଦୂରୀଭୂତହୁଏ, ମୁକ୍ତ ଓ ଶାନ୍ତ ତେତେ ଚଞ୍ଚଳ ସମୀପବର୍ତ୍ତୀ ହୁଏ ।

## ପଞ୍ଚବିଂଶ ପରିଚ୍ଛେଦ ।



ହେ ସାଧୁ ବିବେକିଜନମାନେ, ମନକୁ ଏକ କରି 'ହଂସ-ତମ-ହଂସ କଥା'ରେ ନିଃସଂଶୟ ଚିତ୍ତ ଦିଅ । ରସବିହାରୀ ରସ ସାର କେତେକ ଦିନ

ଗୋପରେ ରହିଲେ । ତେଣେ କଂସ ନୃପତିର ଭୟ କ୍ଷୟ ହେଲନାହିଁ । ସେ ରଜନୀ ଦିବସ ଭାଳିବାକୁ ଲାଗିଲା । ଦିନେ କଂସ ଅଧୀନ ରାଜାଙ୍କ ଅତି ଉତ୍ସାହରେ ହକାରିକରି ସେମାନଙ୍କୁ କହିଲା, "ନନ୍ଦକୁମର ମୋର କାଳ । ସେ କପରି ମୋ ହସ୍ତରେ ପଡ଼ିବ ତାହାର ବିଚାର ମୋତେ କହ । କେଶିଆଦି ମୋର ଯେତେ ବୀର ଥିଲେ, ରାମକୃଷ୍ଣ ଦୁହେଁ ସେ ସମସ୍ତଙ୍କୁ ମାରି ଗୋପରେ ନିଶ୍ଚିନ୍ତ ହୋଇ ରହିଛନ୍ତି ; ସେମାନେ ମୋ ପାଖକୁ ଆସିଲେ, ମୁଁ ସେମାନଙ୍କର ପ୍ରାଣନାଶ କରିବି । ଦେଖିବା କିଏ ସେମାନଙ୍କୁ ରକ୍ଷା କରିବ ।" ସକଳେ ସକଳ ଶ୍ରବଣ କଲେ । କିଏ ପ୍ରଭୁ-ମନ ଘେନିବାପାଇଁ ସେଠାରେ ବହିନ 'ମହିମା' 'ମହିମା' କହି ଉଠିଲା । କିଏ କହିଲା, "ଶ୍ରୀଗୁରୁଙ୍କଠାରୁ ଏ ଭୂମଣ୍ଡଳରେ କିଏ ବଡ଼ ଅଛି ।" କିଏ କହିଲା "ଯେତେ ହେଲେ ସେ ଗଉଡ଼ପିଲା; ଆଜ୍ଞା କରନ୍ତୁ ଭୃତ୍ୟମୁରୁ ଦୂତ ତୁରିତ ଯାଇ ପିଲା ଦୁଇଟାକୁ ଝିଡ଼ିବିଡ଼ି ଘେନିଆସୁ ।" ଯଦି ପଣ୍ଡିତ ପ୍ରଭୁ ଆଶ୍ରୟ ଗ୍ରହଣ କରି ସଭାରେ ପକ୍ଷପାତ କଥା କହନ୍ତି ଏବଂ ପ୍ରଭୁ ସେ କଥାକୁ ଚିତ୍ତରେ ପ୍ରତ୍ୟୟ କରେ, ତେବେ ସେ ସ୍ଥଳୀ ନିଶ୍ଚୟ ଅବିବେକ ପୁରୀ ସନ୍ଦେହ ନାହିଁ; ବକ୍ତାଶ୍ରୋତା ଉଭୟ କାଳେ କାଳେ ଦୁଃଖ ପାନ୍ତି ଓ କାଳ ପୂରିଲେ ଘୋର ନରକରେ ପତିତ ହୁଅନ୍ତି । ସେ ଲୋକର କଥା-ଗୁଡ଼ିକ ମଧୁରତିକ୍ତ ଦ୍ରବ୍ୟ ସମ ଆଦ୍ୟ-ପ୍ରାନ୍ତରେ ହିତ ଓ ଅହିତ ହୁଏ; ଆପାତ-ମଧୁର ଖଳଗିର କର୍ଣ୍ଣରସାୟନ ହୋଇ ଆଦ୍ୟରେ କେଡ଼େ ସୁଖ-କର ଜଣା ନଯାଏ ! ମାତ୍ର ତାହା ପରିଣାମରେ ପ୍ରାଣନାଶର ପଥ ପ୍ରଶସ୍ତ କରେ ।

ସଭାସଦଙ୍କର ଏରୂପ ଚାଟୁବାଣୀ ଶୁଣି କ୍ରୋଧପର କଂସ ଅନ୍ୟ କିଛି ବିଚାରିଲାନାହିଁ । କ୍ରୋଧସିନା ପ୍ରାଣିମାନଙ୍କୁ ସତତ ନାଶ କରୁଛି । ଚାଟୁ-ବାଣୀ ସିନା କେବଳ ଜ୍ଞାନଶୂନ୍ୟ ଲୋକମାନଙ୍କର ମରଣ ଆଗକୁ ଟାଣିଇ ଦିଏ । କେଶରୀକୁ ଦେଖି ଗ୍ରାମସିଂହ ଫୁକାରି ହେଲେ, ସେ କେବେ ବଡ଼ ହୁଏ କି ? ଦିନମଣି ଆଗରେ ଖଦ୍ୟୋତ ଜ୍ୟୋତି ଦେଖାଇ କେବେ ଯଶ

ପାଏ କି ? କଂସ ଶ୍ରୀକୃଷ୍ଣଙ୍କ ମହିମା ଶ୍ରବଣ କରିଥିଲା, ତଥାପି ସେ କିପରି ନିଜ ଗରିମା କଥା କହୁଥିଲା ? କାଳ ଘୋଟିଲେ ପ୍ରାଣୀ ବିକୃତ କଥା କହେ; କଂସ ସହଜେତ ଦୁଷ୍ଟସୀମା, ତେବେ ସେ ସେପରି ଆତ୍ମଶ୍ଲାଘା ନ କରନ୍ତା କାହିଁକି ? ପୁଣି ସେ କହିଲା,—"ହେ ବିଚକ୍ଷଣମାନେ, ଶୁଣ; ମୋତେ ବୁଦ୍ଧିଏ ଦିଶୁଛି, ମୁଁ ଧନୁଯାଗ କରି ଜନକଜନନୀ ସହିତ ରାମ-କୃଷ୍ଣଙ୍କୁ ଏଠାକୁ ଆଣିବି । ଏଣେ ରଙ୍ଗସଜ୍ଜା କରିଥିବି; ରାମକୃଷ୍ଣ ତାହା ଦେଖି ନେତ୍ର ହେବେ; ତେଣେ କୂଟବୁଦ୍ଧି ଯୋଦ୍ଧାମାନେ କରରେ ଆୟୁଧ ଧରି ଉଭା ହୋଇଥିବେ, କୁବଳୟାପୀଡ଼ ମାହୁନ୍ତ ସିଂହଦ୍ୱାର ଆଶ୍ରୟ କରି ରହିଥିବ, ଏବଂ କୁଳିଶ-ହୃଦୟ ମାଲମାନେ ପଥ ଓଗାଳି ଥିବେ; ସେମାନେ କାହା ହସ୍ତରୁ ବର୍ତ୍ତିବେ ?" ଏହିପରି ସଦମ୍ଭ ବଚନ କହି ନଶରେ କର ପକାଇ ନିଃଶ୍ୱାସ ଛାଡ଼ିଲା ଏବଂ ମନ୍ତ୍ରୀଆଡ଼କୁ ଅନାଇ ମୁଚକି ମୁଚକି ହସିଲା । ଅନୁଜ୍ଞାବାସ ସଭ୍ୟ ମୌନତା ଅବଲମ୍ବନ କରି ପ୍ରଭୁଙ୍କ କଥାକୁ ସର୍ବାନ୍ତଃକରଣରେ ସମର୍ଥନ କଲେ ।

ଅନନ୍ତର କଂସ ଅକ୍ରୂରକୁ ଡାକି 'ରାମକୃଷ୍ଣଙ୍କୁ ଗୋପରୁ ଘେନିଆସ' ବୋଲି ଆଦେଶ ଦେଲା । ପରମଭକ୍ତ ଅକ୍ରୂର ମଧ୍ୟ ଶିର ଉପରେ କର ଯୋଡ଼ି ତତ୍‌କ୍ଷଣାତ୍ ରଥରେ ବସି ଗୋକୁଳ ଉଦ୍ଦେଶ୍ୟରେ ବାହାରିଲେ । କେତେ ମଙ୍ଗଳ ଯେ ଆସି ଏକମେଳ ହେଲା ତାହା କିଏ ବିଶଦଭାବରେ କହି ପାରିବ ? ଯାହାର ଶ୍ରବଣ-ମଙ୍ଗଳ ନାମ ଧଇଲେ କୋଟିଅମଙ୍ଗଳ କଟିଯାଏ,ତାହାଙ୍କୁ ଦର୍ଶନ କରିବାପାଇଁ ଯେ ଗମନ କରେ ତାହାର କେଉଁ ଫଳ ନହୁଏ ? ଅକ୍ରୂରଙ୍କର ଦକ୍ଷିଣ ନେତ୍ର ଓ ଦକ୍ଷିଣଗାତ୍ର ସ୍ପନ୍ଦିତହେବାକୁ ଲାଗିଲା । ମନ ଆନନ୍ଦ-ପୁଲକିତ ହେଲା । "ଯୋଗିମାନେ ଯୋଗସାଧନା କରି କଲ୍ପାନ୍ତରରେ ଯାହାର ଭେଟ ପାଉନାହାନ୍ତି, କେଉଁ ସୁକୃତ-ବଳରେ ଏ ଚର୍ମଚକ୍ଷୁରେ ମୁଁ ତାହାଙ୍କର ଦର୍ଶନ ପାଇବି ! ମୁଁ କି ତପକରିଛି ମୁଁ ତ ଜାଣି ପାରୁନାହିଁ, ସତେକି ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ ଦେଖିପାରିବି ?" ଏହିପରି ଭାବି ଅକ୍ରୂର ଆନନ୍ଦରେ ନାଚି କଲେ ।

ଯେ ଦେବ-ମସ୍ତକ-ମୁକୁଟ-ମର୍କତମଣି, କମ୍ବୁ-ଚକ୍ରାଦି ଯାହାର ପାଦ-ପଦ୍ମରେ ମଧୁକର ପ୍ରାୟ ଶୋଭନ ଦିଶେ, କୈଳାସ-ଶିଖରବାସୀ ପଞ୍ଚାନନ ଯାହାର ପାଦଜଳରେ ସ୍ନାନ କରନ୍ତି, ଭବସାଗରରୁ ପାର କରିବାକୁ ଯାହାର ନାମ ନୌକାଯାନ, ସେହି ପୁଣ୍ୟଶ୍ଳୋକ ଶ୍ରୀକୃଷ୍ଣଙ୍କ କଥାମାନ ଭାବୁଁ ଭାବୁଁ ଅକ୍ରୂରଙ୍କ କଳେବର ଆହ୍ଲାଦରେ ରୋମାଞ୍ଚିତ ହେଲା ଏବଂ ନେତ୍ରରୁ ନୀର ଗଳିଲା; କୃଷ୍ଣପଦ ଉଚ୍ଚାରି କଣ୍ଠ ବାଷ୍ପ-ଗଦ୍‌ଗଦ ହେଲା । ଅକ୍ରୂର ଏହିପରି ଭାବଭୋଳରେ ବୃନ୍ଦାବନରେ ପ୍ରବେଶ କଲେ ଏବଂ ଭଗବାନଙ୍କ ପାଦପଦ୍ମ-ଚିହ୍ନ ଅବଲୋକନକରି ତହିଁରେ କମ୍ବୁ, ଚକ୍ର, ପଦ୍ମ, କୁଳିଶ, ଅଷ୍ଟକୋଣ, ଊର୍ଦ୍ଧ୍ୱରେଖା, ତ୍ରିକୋଣ, ଧନୁ, ଧ୍ୱଜ, ସ୍ୱସ୍ତିକ, ମୀନ, କଳଶ, ଯବ, ବିନ୍ଦୁ, ଅଙ୍କୁଶ, ଅର୍ଦ୍ଧେନ୍ଦୁ, ଗୋଷ୍ପଦ ଓ ଅମର ଏହି ଅଷ୍ଟାଦଶ ଲକ୍ଷଣ ନିରୀକ୍ଷଣ କଲାମାତ୍ରେ, ସେ ମଧୁରେ ମଧୁମକ୍ଷିକା ତୁଲ୍ୟ ସେ ପାଦପଦ୍ମ ଚିହ୍ନରେ ଶରୀର ପକାଇ ଭାବରେ ଆଉ ତାହା ତ୍ୟାଗ କରିପାରିଲେ ନାହିଁ; କଳେବର ରେଣୁରେ ଧୂଳି ହୋଇଗଲା । ଅକ୍ରୂର ସେଥିରୁ ବହୁ-କଷ୍ଟରେ ଉଠି ଧୀରେ ଧୀରେ କିଛିଦୂର ଯାଇ ଜଗଜ୍ଜନଜୀବନ ଶ୍ରୀରାମକୃଷ୍ଣ ବେନିଭାଇଙ୍କୁ ଦୂରରୁ ଦର୍ଶନକରି କୃତକୃତ୍ୟ ହେଲେ ।

ସେ ଦେଖିଲେ,—'କୈରବ-କର୍ପୂରସୁନ୍ଦର ଧବଳବର୍ଣ୍ଣ ଶ୍ରୀରାମ-ଚ୍ଛବିଠାରୁ ଖର୍ବ ଦିଶୁଅଛି; କଟିରେ ନୀଳପଟ୍ଟମାଳା କୈଳାସରେ ନୀଳମେଘପରି ଶୋଭା ପାଉଅଛି; ଶିରରେ ଉଷ୍ଣୀଷ ଓ ଦେହରେ ଗୋଦୋହନ ବେଶ ବିରାଜୁଛି; ନୟନଜ୍ୟୋତି କୋକନଦକୁ ଜିଣିଅଛି । ଗଙ୍ଗା ପାଶରେ ଯମୁନାପରି ରାମଙ୍କ ପାଶରେ ବେଣୁପାଣି ଦଣ୍ଡାୟମାନ ରହିଛନ୍ତି; ତାଙ୍କର ଶ୍ରୀଅଙ୍ଗଚ୍ଛଟାର ଉପମା ଦେବାପାଇଁ ଗୋଟିଏ ସୁଦ୍ଧା କଳାପଦାର୍ଥ ସରିନୁହେଁ; ଯେ ଗଙ୍ଗାଜଳ ପାନକରେ, ତାହାର ମନ ଗୋଳିଆ ବର୍ଷାପାଣିକୁ ଯିବ କି? ସୂକ୍ଷ୍ମ କଟିରେ ପୀତପଟ୍ଟନୀ ବାନ୍ଧି ତହିଁରେ ମୋହନବେଣୁ ଖୋସି ପ୍ରମୋଦ-କୋମଳଭାବରେ ଗୀତ ପଦେ ପଦେ ଗାଇ ଶ୍ରୀକୃଷ୍ଣ ଗାଈମାନଙ୍କୁ ଡାକୁଛନ୍ତି, ପୁଣି କେଉଁ ଗାଭିର-

ଚରଣରେ ଛନ୍ଦଣୀ ଛନ୍ଦ ଜାନୁଯୁଗଳରେ ଦୋହୁଣୀ ସଂଯୋଗକରି କାମିକାମ-ଦୋହନ ଶ୍ରୀହରି କଳସରେ କ୍ଷୀର ପୁନଃ ପୁନଃ ରଖି ଗୋଦୋହନ କରୁଛନ୍ତି । କଳା ଶ୍ରୀଅଙ୍ଗରେ କ୍ଷୀରବିନ୍ଦୁ ନୀଳଗଗନରେ ନକ୍ଷତ୍ର ବିନ୍ଦୁପରି ସୁନ୍ଦର ଦେଖାଯାଉଅଛି । କଳିତବାସ ଓ ପାଦପଦ୍ମରେ ପଦ୍ମାଙ୍କିତ ରତ୍ନପାଦୁକା ମନ-ନୟନ-ପାଶ ହୋଇଅଛି ।'

ଏ ଗୋଦୋହନ ରୂପ ଦେଖି ଅକ୍ରୂର ଅଗ୍ରସର ହୋଇ ଦେବନ-ଷ୍ଟଇଙ୍କୁ ଅଭିବାଦନ କଲେ । ସର୍ବଜ୍ଞ ଶ୍ରୀହରି କଂସ ଦୂତକୁ ଅନାଇଁ ବିସ୍ମିତ ନ ହୋଇ ସସ୍ମିତ ହେଲେ ଏବଂ ଅତ୍ୟନ୍ତ ଅନୁରାଗରେ ଅକ୍ରୂରଙ୍କୁ କରଯୁଗରେ ଆଲିଙ୍ଗନ କଲେ । ଅନନ୍ତର ହସି ହସି ନାନା କୁଶଳ ପ୍ରଶ୍ନ ପଚାରିଲେ ଓ 'ଏଠାକୁ କି କାର୍ଯ୍ୟରେ ଆସିଲ' ଇତ୍ୟାଦି ପ୍ରକାରରେ ଅନେକ ସ୍ନେହ ସମ୍ଭାଷଣ କଲେ । ଅକ୍ରୂର କହିଲେ, "ମୁଁ ତୁମ୍ଭ ଅନ୍ତର୍ଯ୍ୟାମୀଙ୍କୁ କଣ କହିବି; ଆପଣଙ୍କୁ ନେବାପାଇଁ କଂସ ମୋତେ ପେଷିଅଛି; ସେ ଧନୁଉତ୍ସବ କରୁଅଛି; ଯେତେ କୂଟ ସେ କରିଛି, ତାହାମୁଁ କହିପାରିବିନାହିଁ, ଆପଣ ମନେମନେ ସକଳ ବୁଝିଥିବେ ।" କେଶବ ସରାଗ ବଚନରେ ହସି ହସି କହିଲେ, "ମାମୁଙ୍କର ଧନୁଯାତ୍ରା ଥରେ ଦେଖିଯିବା; କୈତବ କଥାକୁ ହେଉ ବା ମାମୁଙ୍କ ମନୋବ୍ୟଥା ଛଡ଼ାଇବାକୁ ହେଉ ଆମ୍ଭେ ସବୁ ରୂପରେ ଯିବାକୁ ସମ୍ମତ ହେଲୁଁ; ତୁମ୍ଭେ ଯାଇ ଗୋପରେ ଏ ବାର୍ତ୍ତା କହ; ଜନକଜନନୀ କଣ କହୁଛନ୍ତି କେଜାଣି; ଅବଶ୍ୟ ରାଜା ଆଜ୍ଞା ଅବଜ୍ଞା କରିବା ବା ରାଜାଙ୍କୁ ନ୍ୟୂନ ମଣିବା କାହାରି କଦାପି ଉଚିତ ନୁହେଁ ।" କେଶୀଜୀବନ-ହରଙ୍କର ଆଜ୍ଞା ପାଇ ଅକ୍ରୂର ଗୋପକୁ ଯାଇ ନନ୍ଦଙ୍କ କରରେ କଂସ-ଉଲୁସି ଦେଇ ସକଳ ସନ୍ଦେଶ କହିଲେ । ତାଙ୍କର କଥା ଶୁଣି ନନ୍ଦ ଯାହାହେଲେ ତାହା କିଏ ବର୍ଣ୍ଣନା କରିପାରେ ?

କହୁଁ କହୁଁ ବ୍ରଜନାହା ମଥୁରା ଯିବେ ବୋଲି ଗୋପଯାକ ଗୋଳ ହୋଇଗଲା । ଯଶୋଦା ମାତା ମହାଶୋକକରି ନୟନରୁ ଲୋତକଧାର ଅବିରାମ ଗଡ଼ାଇବାକୁ ଲାଗିଲେ ଏବଂ ବାହୁନି ବାହୁନି କାନ୍ଦିଲେ, "କାହ୍ନୁ-

ବହୁନେ, କଳାକର ଦେଖି ବୁକୁ ବଦାରି ହୋଇବ; କୋକିଳ ଡାକ କଣ୍ଠରେ ଗରଳ ଢାଳିବ; କର୍ପୂର-ଚନ୍ଦନ କେଉଁ କାମରେ ଲାଗିବ; ଶୟନ ଭୋଜନ ମୋର ଆଶୀ-ବିଷ ହେବ; ତା କ୍ରୀଡ଼ାମନ୍ଦିର ମୋର କାରା ପାଲ-ଟିବ; ଜୀବ ଚାଲିଗଲେ ଖାଲି ଶବ ପଡ଼ିଥିବ।" ଏହିପରି କାନ୍ଦିକାନ୍ଦି ଧକେଇହେଲେ ଏବଂ ଅବଶେଷରେ ଘନଋତୁ ପିକପ୍ରାୟ ମୂକ ହୋଇ ସକଳ ପ୍ରତିଆଶା ଛାଡ଼ିଲେ। ଗୋପୀ ଗୋପାଳମାନେ କହିଲେ, "ଚାଲ ସମସ୍ତେ କୃଷ୍ଣ ସଙ୍ଗରେ ଯିବା; ଗୋପସୁଖ ଅନ୍ତର ହେଲେ କଣ ହେବ, ଶ୍ରୀମୁଖ ତ ଚାହିଁବା; କୃପଣ ଲୋକର ଧନକ୍ଷୟ ନହେଲେ ତାହାର କି ମନରେ କଷ୍ଟ-ହୁଏ? ଜନ ଅସାଧାରଣ ପଣ୍ଡିତ ହେଲେ ସୁଦ୍ଧା ଯଦି କୁତ୍ସିତ ଗ୍ରାମରେ ବାସକରିଥାଏ, ତାହାର କି କେବେ ସେଥିପାଇଁ ମନରେ ଦୁଃଖ ହୁଏ ? ସେହିପରି ଆମ୍ଭେମାନେ କୃପଣପରି କେବଳ ଶ୍ରୀମୁଖ ଦର୍ଶନ କରି ଅସ୍ଥା-ନରେ ବାସ କରିବା; ଏଠାରେ ଆଉ କାହାକୁ ଧେନ କର୍ପାଇ ରହିବା।"

ଏହିପରି ନାନାକଥା କହୁଁ କହୁଁ ଦିନମଣି ଅସ୍ତାଚଳରେ ଅସ୍ତ-ହେଲେ। ରାମକୃଷ୍ଣ ସୁରଭିଧେନୁ ଗୋପକୁ ଆଗମନ କଲେ। ତତ୍ପରେ ମାଙ୍ଗଣାଦି ବିଧି ସମାପନାନ୍ତେ ମଣୋହି ଶେଷ କରି ଶ୍ରୀହରି ଅକ୍ରୂର ସଙ୍ଗରେ ନାନାପ୍ରକାର କଥାବାର୍ତ୍ତାରେ ଯାମିନୀ-ପ୍ରଥମଯାମ ଯାପନକଲେ। ତଦ-ନନ୍ତର କମନୀୟ ପଲ୍ୟଙ୍କରେ ହଂସୁଲୀ-ତୁଳୀର ଅଙ୍କ-ଦେଶରେ ପହୁଡ଼ିଲେ। କ୍ରମେ ରଜନୀ ଶେଷହେଲା। ଆମ୍ରଘୋଷ ଚରଣାୟୁଧ ରଟିବାକୁ ଲାଗିଲା। ଦେବ-ଦେବ ନିଦ୍ରାଦେବୀ କୋଳ ଛାଡ଼ିଲେ। କଂସ ଦୂତ ରଥ ସଜା-ଡ଼ିଲେ। ଦେଖୁଁ ଦେଖୁଁ ଗୁଣ୍ଡିଚ୍ଛୁଯାତ ପ୍ରାୟ ବହୁତ ଲୋକ ମାଡ଼ିପଡ଼ିଲେ। କାମପାଳ ଓ ନନ୍ଦବାଳ ପ୍ରାତଃ ମଣୋହି ସାରି ରଥରେ ବିଜୟ କଲେ। ପତିବ୍ରତା ପତିମତୀମାନେ ଉଚ୍ଚସ୍ୱରରେ ହୁଳହୁଳି ଦେଲେ। ନନ୍ଦ ଅନେକ ସମ୍ଭାର ଭିଆଣ କଲେ। ଗୋପଗଣ ନାନା ପ୍ରକାର ବେଶରେ ସଜ ହେଲେ। କମଳନୟନଙ୍କ ଗହଣ ସଂସାରରେ ନିରୁପମ ହେଲା। ତେଣେ କଂସର ଆଶା-ବିନାଶ ଓ ଏଣେ କୃଷ୍ଣୈକମନା ବ୍ରଜବାଳାମାନଙ୍କର ଅନ୍ତଃସନ୍ତାପ

କଥା ଶୁଣିଶୁଣି ଦର୍ଶକ-ଭକ୍ତର ମନ ଯୁଗପତ୍ ହର୍ଷ-ବିଷାଦରେ ପୂର୍ଣ୍ଣହେଲା । ପ୍ରଭୁମାନଙ୍କର ହୃଦୟ କି ନିର୍ଦ୍ଦୟ ! ସେମାନଙ୍କ ଅନୁଗ୍ରହରେ ମହାଦାନ ମିଳିଥାଏ ସତ୍ୟ ମାତ୍ର ନିଗ୍ରହରେ ଶିରଚ୍ଛେଦନ ଦଣ୍ଡଲାଭ ହୋଇଥାଏ । ଯେ ଗୋପୀ-ଗୋପାଳଙ୍କୁ ନାନାପ୍ରକାରରେ ଅଭୟ ଦେଇଥିଲେ, ସେ ଏବେ ସମସ୍ତ ସ୍ନେହ, ଶ୍ରଦ୍ଧା ଓ ପ୍ରୀତି ଭୁଲି ମଧୁପୁରକୁ ଯିବାପାଇଁ ଗୋଡ଼ କାଢ଼ି ବସିଲେ ।

## ଷଷ୍ଠବିଂଶ ପରିଚ୍ଛେଦ ।

କୃଷ୍ଣଙ୍କର କଂସନଗରକୁ ଯିବାକଥା ଶୁଣି କଳାକରମୁଖୀ ଗୋପବାଳାମାନେ କାତର ଓ ବ୍ୟାକୁଳ ହୋଇ ସଜଳନୟନରେ ନୀରଦଶ୍ୟାମଙ୍କୁ ଏହିପରି ବିନୀତ ବଚନ କହିବାକୁ ଲାଗିଲେ,—

"ହେ ଦୟାନିଧି, ଆମ୍ଭେମାନେ କିପରି ଆପଣଙ୍କୁ ମୂର୍ଚ୍ଛିବୁଁ । କି ମନ୍ତ୍ରବଳରେ ଆପଣ ହୃଦକମଳରେ ଏପରି ଦମ୍ଭ ଧାରଣକଲେ । ରାସ-ରଜନୀ ଯାହାନ୍ତାରୁ ଏପରିକି ଶରୀର ଓ ପ୍ରାଣ କଣ ହେଲାଣି; ପୁଣି ଆପଣ ମଥୁରାକୁ ଗଲେ ସେ ଦୁହେଁ ରହିବେଟି ? ଆପଣ ଯେତେ ସ୍ନେହ ଦେଖାଉଥିଲେ ଆଜି ସେତିକି ଅନାଦର କରୁଛନ୍ତି । କରୁଣା-କୋମଳ ଚିତ୍ତକୁ କମଠ-ପୃଷ୍ଠ ପ୍ରାୟ କାହିଁକି କଠୋର କଲେ । ଅବିଧି ଦେବତା ଦ୍ୱାରା ପରିତ୍ୟକ୍ତ ହୋଇ କେଉଁ ସେବକ-ଭକ୍ତ କୃଶତା ନଭଜେ ? ପତିବ୍ରତା ପତି-ମୃତ୍ୟୁରେ ଅସହ୍ୟ ଖଗ-ଯନ୍ତ୍ରଣାରୁ ମୁକ୍ତ ପାଇବାପାଇଁ ପ୍ରବଳ ଜଳନ୍ତା ଅନଳରେ କଳେବର ଦହନକରେ । ଆପଣଙ୍କ ବିରହରେ ଆମ୍ଭମାନଙ୍କର ସେପରି କୃଶତା ଓ ଯନ୍ତ୍ରଣା ନହେବ କି ? କାହାକୁ କହିବୁଁ, କିଏ ଆମ୍ଭ-ମନୋବ୍ୟଥା ଖଣ୍ଡନ କରିବ ? କୃପାଳୁ ହୋଇ କୃପା ଅଭାବରେ ଆପଣ ତ ଛଳକୁ ମୁଖ ପୋଡିଲେଣି । ଆପଣଙ୍କଠାରେ ମନଦେଇ କୁଳ, ଶୀଳ ଓ

ବ୍ୟବହାରକୁ ହତାଦର କଲୁଁ; ଏବେ ବେଦନାଭରେ ଚରଣଦେବା ଲୋକ ପ୍ରାପ୍ତ ହେଉଛୁଁ । ଆପଣଙ୍କ ହୃଦୟ ଯେପର କୁଳିଶ-କଠିନ, ଆମ୍ଭମାନଙ୍କର ହୃଦୟ ସେହିପରି କର୍କଶ କାରଣ ଆପଣ ଗତ କରୁଛନ୍ତି ତଥାପି ଆମ୍ଭମାନଙ୍କର ଏ ଗ୍ରନ୍ଥି ଯେପରି ସେହିପରି ରହିଛି । କାକ-ପୋଷିଲା ପିକ ପ୍ରାପ୍ତ କଥା ଲୋକରେ ଜଣାଯାଉଛି । କଂସ ତ ଆମ୍ଭମାନଙ୍କର ବୈରୀ, ଆଉ କାହା ଆଗରେ ଗୁହାରି କରିବୁଁ ? କୃଷିଭୂମି ବୃତି ଯଦି କୃଷି ଚରିଯାଏ, ବା ଗଳାମାଳା ଯଦି ଗଳା କାଟିଦିଏ, ତେବେ ସେ ଅସମ୍ଭବ ଅନୀତି-କଥା କାହାରିକୁ କହିବାକୁ ଲାଜ । କେତେ ସଙ୍କଟରୁ ରଖି ଏବେ ସମସ୍ତ ଉପେକ୍ଷାକରି ଯିବାକୁ ସଜ ହେଉଛନ୍ତି । କରରେ ବିଷବୃକ୍ଷ ଲଗାଇ ତାହାକୁ ପୁଣି ନିଜେ କାଟିବା ଉଚିତନୁହେଁ; କେଉଁ ମତ ଆପଣ ଜାଣନ୍ତିନାହିଁ ଯେ ଆପଣ ଏପରି ଦୂଷଣକଥା ଭୂଷଣ କରୁଛନ୍ତି । ବିହି କଣ କରିଥିଲା, ଏବେ ସେହି କଣ କରୁଛି ! ଆପଣ ପ୍ରତ୍ୟକ୍ଷ କଣ ନକରୁଛନ୍ତି ! କର୍ମ ବାମ ହେଲେ, ବିଧାତା ବିମୁଖ ହେଲେ, ସୁଧା-ବୃକ୍ଷରେ ବିଷ ଉପୁଜେ । ଆପଣ ବର୍ତ୍ତମାନ ଆଖି ପିଞ୍ଛୁଡ଼ିତାଙ୍ଗୁଡ଼ି କରୁଣା ବିଲୋକନ କରନ୍ତୁ । ଆମ୍ଭେମାନେ କରଯୋଡ଼ି ଏତେ କଥା କହୁଛୁଁ; ଆପଣ ତ ଶିର ନୁଆଇଁ ବସିଲେ, ତାହାର କୌଣସି ଉତ୍ତର ଯେ ଦେଉ ନାହାନ୍ତି । ପ୍ରଭୁମାନେ ଯାହା କରିପାରନ୍ତି ଅନ୍ୟମାନେ ତାହା କରିପାରନ୍ତି ନାହିଁ, ସେମାନେ ସେବକମାନଙ୍କୁ କେତେରୂପରେ ମଣ୍ଡନ୍ତି କିନ୍ତୁ ଦୋଷ କଲେ କିଞ୍ଚିତମାତ୍ର ଦଣ୍ଡନ୍ତି କାରଣ ସେମାନଙ୍କପାଇଁ କହିବାକୁ ସେମାନଙ୍କର ଅନ୍ୟ କେହି ସାହା ନଥାନ୍ତି, ଆମ୍ଭେ ସକଳ ଗୋପାଙ୍ଗନା କାମନା କରିଥିଲୁଁ ଯେ ଆପଣ ଗୋପରେ ଶୁଭରେ ନିଶ୍ଚିତ ଥିବେ ଏବଂ ଆମୋଦ ପ୍ରମୋଦରେ ଆପଣଙ୍କ ପାଦସେବାରେ ଆମ୍ଭର ଦିନ ଯିବ । କିନ୍ତୁ ବିଧି ସେ କଥା ଅନ୍ୟଥା କଲା । ଆପଣ ମଧ୍ୟ ଅବିଧି କରୁଛନ୍ତି । କଳାନିଧିକୁ କରରେ ଧରିବାପାଇଁ ମନରେ ବିସ୍ତର କଲେ ତାହା କି ସିଦ୍ଧ ହୁଏ ? କେତେପ୍ରକାର ବିପତ୍ତିରୁ ଉଦ୍ଧାରକରି ଯେଉଁ ଯଶ-ଚନ୍ଦ୍ର ଉଦୟ କରି-

ଛନ୍ତି, ତାହାଙ୍କୁ ଆପଣ କାହିଁକି ନଗଣ-ଅସ୍ତଗିରରେ ଅସ୍ତ କରିବାପାଇଁ ବିସ୍ମୃତ କରୁଛନ୍ତି । ଆମ୍ଭମାନଙ୍କର କୁଳକୀର୍ତ୍ତି-ପତାକା ଟେକାଇ କପଟୀ ଅନ୍ଧର ସଙ୍ଗରେ କେଉଁ ସୁଖପାଇଁ ଆପଣ ବାହାରିଛନ୍ତି ? କଣ୍ଟି ଭଡ଼ିଲା କପିତ୍ଥ ପରି ଆପଣ ଆମ୍ଭମାନଙ୍କର ଆକାରମାତ୍ର ରଖିବେ କିନା; କମଠ ନକ୍ରକୋଷ ଗ୍ରାସ କଲା ପ୍ରାୟ ପରୋକ୍ଷଭାବରେ ଆପଣ ଆମ୍ଭମାନଙ୍କର ବିନାଶ-କାରଣ ହେବେ କିନା; କେବଳ ଆପଣ ଏ ସମସ୍ତ ଆଖିରେ ଦେଖିବେ-ନାହିଁ । ଓହୋ ! କର୍ମରେ ଏତେ ଯୋଗଅଛି ! ଆହୁରି କେତେ ଦଶା ଭୋଗ କରିବୁଁ । ଆପଣଙ୍କର ବିୟୋଗ ଆମ୍ଭମାନଙ୍କୁ କୁରରୀ ପକ୍ଷୀପରି ଝୁରାଇବ । କଷ୍ଟରୁ ତରିବାପାଇଁ ଭକ୍ତି-ପ୍ରୀତି-ତରୀ ନେଇ ଆପଣଙ୍କ ସଙ୍ଗ-ସିନ୍ଧୁରେ ମେଲିଲୁଁ ଏବଂ କୁଳଶୀଳ ଲଜ୍ଜାଦିକୁ ତହିଁରେ ଅଖାଲ-କରି କିଛିକାଳ ନିର୍ବିଘ୍ନରେ ବାଣିଜ୍ୟ କଲୁଁ, କେତେ ସୁଖରେ ଧନ ନେଲୁ; ମାତ୍ର ବର୍ତ୍ତମାନ କଷ୍ଟ-ଦୂତ-ବତାଶ ଦେଖି, ସମସ୍ତ ନାଶକରି ଆମ୍ଭମାନଙ୍କୁ ଦୁଃଖ-ସାଗରରେ ଭସାଇଲା । ଏବେ କାହାପାଖରେ ଆଶ୍ରୟ ନେବୁଁ; କାହାକୁ କଣ କହିବୁଁ, କିଏ ଆମ୍ଭମାନଙ୍କର ମନ ଜାଣିବ; ହଠାତ୍ ପ୍ରମାଦ ପଡ଼ିଗଲେ ବା ବିଷାଦ ଜଡ଼ିଗଲେ, ହେ ହରି, କିଏ ଆମ୍ଭମାନଙ୍କର ଜୀବନ ରକ୍ଷା କରିବ ? ଅଧିକ କହିଲେ କଅଣ ହେବ ? କାହାର ଆପଣ ସହାୟ ନହୋଇଛନ୍ତି ! ଆପଣ ଚକ୍ରସେହ୍ନା; ଅଥଚ ଆମ୍ଭେମାନେ ହେଲୁଁ ସହାୟହୀନା ! ଏ ସମସ୍ତ ଆପଣଙ୍କର ଭିଆଣ, କର୍ମ ଫାଟିଲାବେଳେ କଳ୍ପ-ତରୁ ମଧ୍ୟ ଫଳେନାହିଁ । କର୍କଟପକ୍ଷୀ, ବଂଶ ଓ କଦଳୀବୃକ୍ଷ ଫଳ ଦାନ କରି ଜୀବନ ତ୍ୟାଗ କରନ୍ତି ଏବଂ ଅସାଧାରଣ ପଣ୍ଡିତ ମଧ୍ୟ ସମୟସମ-ୟରେ ବିବେକପଣ ପରିହାର କରେ; ବିଧି କୁଟିଳ ହେଲେ ଏପରି ଘଟେ । ଯେତେବେଳେ କାଳ ଘୋଟିବ, ତେତେବେଳେ କିଏ କଣ କରିବ ? ସେତେବେଳେ ବିହଙ୍ଗ ଆକାଶମଣ୍ଡଳରେ ଗତି କଲେହେଁ ମହୀତଳସ୍ଥ ପାଶରେ ପଡ଼ିଯିବ । ଯେତେ ଉପାୟ କରୁ ପଛେ, ପ୍ରାଣୀ ମାୟାରେ ପଡ଼ି ରହିବ ଏବଂ ମାୟାମୁକ୍ତ ହେବାର ଚେଷ୍ଟାରେ ତାହାର ଶ୍ରମମାତ୍ର ସାର ହେବ; ଆପଣଙ୍କ ଦୟାବ୍ୟତୀତ ସମସ୍ତ ନିଷ୍ଫଳ ହେବ । ପୁଣି କାଳ ଯାହା

କରେ ତାହା କଦାପି ଅନ୍ୟଥା ହୁଏନାହିଁ; ସମସ୍ତ ଘଟନାଚକ୍ର ତାହାର ଆୟତ୍ତ । ଆପଣ ମର୍ତ୍ତ୍ୟମଣ୍ଡଳରେ ଦେହ ଧାରଣ କଲା ମାତ୍ରେ ତାହାର ଅଧୀନ ହେଲେ । କଂସ ସଙ୍ଗରେ ଭେଟିବାପାଇଁ କାଳହିଁ ଆପଣଙ୍କୁ ଉଚ୍ଚାଟ କରୁଛି । କାହାର କଣ ହେବ, କିଏ କଣ କହିବ ତାହା ସମୟରେ ପ୍ରକଟିତ ହେବ । ତରଙ୍ଗିଣୀ, ଧର୍ମଦ୍ରୋହୀ ଦଣ୍ଡଧାରୀ, ଶୃଙ୍ଗୀ ଓ ଖଳ ଏମାନଙ୍କୁ ଜନକାଳେ ବିଶ୍ୱାସନାହିଁ; ତେବେ କି ସୁଖପାଇଁ କାଳସର୍ପ ମୁଖକୁ ଯିବାପାଇଁ ଆପଣ ସାହସ କରୁଛନ୍ତି । ଆମ୍ଭମାନଙ୍କର ବୋଲ କରନ୍ତୁ; ଆମ୍ଭେମାନେ ନିଶ୍ଚୟ ଆପଣଙ୍କର ଭଲ କହୁଛୁଁ । କୋକିଳ କଳା ହେଲେହେଁ ତାହାର ସ୍ୱରକୁ ସମସ୍ତେ ଆଦର କରନ୍ତି; ଆମ୍ଭେମାନେ ସ୍ତ୍ରୀଲୋକ ହେଲେହେଁ ଆମ୍ଭମାନଙ୍କ କଥା ସତ୍ୟ; ସୁତରାଂ ତାହା ଆପଣଙ୍କର ଶୁଣିବା ଉଚିତ । ଆପଣଙ୍କୁ ଏ ଅପ୍ରିୟ ସତ୍ୟ ଶଲ୍ୟପରି ହେଉଥିବ ।”

କୃଷ୍ଣ ହସି ଉତ୍ତର କଲେ,—“ଗୋପୀଗଣ, ତୁମ୍ଭେମାନେ ଯେତେ ଯେତେ ହିତ କଥା କହିଲ, ସବୁଥିରେ ମୁଁ ସମ୍ପୂର୍ଣ୍ଣରୂପେ ତୁମ୍ଭମାନଙ୍କସହ ଏକ ମତ; ଯେପରି କହିଲ ତୁମ୍ଭ ଆମ୍ଭ ଭାବ ଠିକ ସେହିମତ । ତୁମ୍ଭେମାନେ କୌଣସି ଭାବନା କରନାହିଁ । ମୁଁ ମଧୁ-ବନରେ ଯାତ୍ରା କରୁଛି; କୌତୁକ ଦେଖିବି, ରାଜା ଆଜ୍ଞା ରଖିବି, ପୁଣି ତୁମ୍ଭ ପାଖକୁ ଫେରି ଆସିବି । ଜଳାକର ଓ ଜଳାମେଘ ବିନା ଚକୋର ଓ ଚାତକ ଜୀବନ ଧରି ପାରିବେକି ? ଜଳ ନପାଇଲେ ମୀନ କି ମୁହୂର୍ତ୍ତେ ବଞ୍ଚିପାରେ ? ମୋତେ ଭାବରେ କିଣିଅଛ, ମୁଁ କି ତୁମ୍ଭଙ୍କୁ ଅନ୍ତର କରିପାରେଁ ? ମୁଖ ପ୍ରସନ୍ନ କର ମୁଁ ଦେଖେଁ; ହସି କଥା କହିଲେ ଯିବା ମୁଁ ଯିବି । ସ୍ମିତ ବଦନରେ ବିଦାୟ ନଦେଲେ ଏହି ରଥରେ ଏହିପରି ବସିଥିବି ।”

ଜଣେ ଗୋପୀ କହିଲା, “ହରିହେ, କେତେଛନ୍ଦ ଆପଣ ଜାଣନ୍ତି ! ଅମାବସ୍ୟାରେ କି ଚକୋର ବଞ୍ଚେନାହିଁ ? ମେଘ ଗୁଡ଼ିଗଲେ ଚାତକ କି

ଜିଏନାହିଁ ? କେତେକ ମୀନପରି ଜଳରୁ ବାହାର ସ୍ଥଳରେ ମୁହୂର୍ତ୍ତେ କଣ ଦିନେ ଦୁଇ ଦିନ ରହି ପାରନ୍ତି; ଆପଣ କାହିଁକି ଅନ୍ତର କରିବେ, ନିଜେ ନିଜେ ଅନ୍ତର ହୋଇ ଯିବେ; ଭିଦାସ୍ତୁ ନଦେଲେ ରଥରେ ଏକ୍ଷଣ ପରି ବସିଥିବେ, ମାତ୍ର ଅକ୍ରୂର ରଥ ଚଳାଉଥିବ । ସବୁ କଥା ସତ, ହରି ସବୁ କଥା ସତ ।”

ଅନ୍ୟ ଜଣେ କହିଲା, “କୁମ୍ଭକାର ଉହା ଜାଳି ତାହାକୁ ଶୀତଳ କରିବାପାଇଁ ଯେପରି ତାହା ଉପରେ ପଙ୍କ ଲିପେ, ଆପଣ ସେହିପରି ଆମ୍ଭମାନଙ୍କୁ ଅନ୍ତର୍ଦାହ ଦେଇ ପୁଣି ପ୍ରସନ୍ନ କରିବାପାଇଁ କେତେ ପ୍ରବୋଧ ବଚନ କହୁଛନ୍ତି, କେତେ ନବ ଦୃଶ୍ୟ ଦର୍ଶନ କରି କେତେ ନବବଚନ ଶ୍ରବଣ କରି କେତେ ନବ ଦ୍ରବ୍ୟଲାଗି ହୋଇ କେତେ ସୁଖରେ ଆପଣ ରହିବେ; ଆଉ ଆମ୍ଭମାନଙ୍କ କଥା କାହିଁକି କହୁଛନ୍ତି; ପ୍ରସନ୍ନମୁଖ ହେବା-ପାଇଁ ଆମ୍ଭମାନଙ୍କୁ ଯେ ବୋଲୁଛନ୍ତି, ଆପଣ ନିଜେ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉଛନ୍ତି ନା ? ନୂତନ ପଦାର୍ଥରେ ଯେଉଁ ପ୍ରଥମ ଆଗ୍ରହ ଥାଏ, ତାହା ପୁରାତନ ପଦାର୍ଥରେ ଥାଏ ନାହିଁ ବୋଲି ନା କଣ ? ଆମ୍ଭମାନଙ୍କ ଭକ୍ତି-ପ୍ରୀତିରେ ଆଉ ନୂତନତ୍ୱ ନାହିଁ କି ବିଶେଷତ୍ୱ ନାହିଁ; ସେଥିପାଇଁ କି ଏ ପୁରାତନ ଜନଙ୍କର ସଙ୍ଗ ଆପଣଙ୍କର ଅପ୍ରୀତିକର ହେଲା ? ଏ ଧୀନ ହୀନ ଜନ ତୁଣଠୁଁ ନୀଚ; ଏମାନଙ୍କର ଏ ହୀନତମ ହୃଦୟରେ ନିତ୍ୟ ନବ-ଭାବ ନମିଳିଲା ବୋଲି କି ଛାଡ଼ି ଯାଉଛନ୍ତି ?”

କୃଷ୍ଣ ଉତ୍ତର କଲେ, “ପୁରାତନ ବୋଲି ପଦାର୍ଥକୁ ପରିତ୍ୟାଗକରି କେବଳ ନୂତନତ୍ୱରେ ମୁଗ୍ଧ ହୋଇ ନୂତନ ପଦାର୍ଥକୁ ଆଦର କରିବା କୁମନୁଷ୍ୟମାନଙ୍କର ଗୋଟିଏ ପ୍ରଧାନ ଦୋଷ, କାରଣ ସେମାନେ ଗୁଣ ଚିହ୍ନନ୍ତିନାହିଁ, କେବଳ ରୂପ ଦେଖନ୍ତି । ଯେପରି ପତଙ୍ଗ ଅନଳର ରୂପରେ ମୋହିତ ହୋଇ ପ୍ରାଣ ହରାଏ, ଯେପରି କୁରଙ୍ଗ ବ୍ୟାଧର ମୂରଲୀ ଧ୍ୱନିରେ, ମାତଙ୍ଗ ମାତଙ୍ଗୀ ସଙ୍ଗରେ, ଭୃଙ୍ଗ ମକରନ୍ଦ ଗନ୍ଧରେ ବା ମୀନ ସ୍ୱାଦଲାଳସାରେ ଦୁର୍ଦ୍ଦଶା ପ୍ରାପ୍ତ ହୁଏ, ସେହିପରି ଅମନୁଷ୍ୟ ଲୋକ

ଇନ୍ଦ୍ରିୟପର ହୋଇ ବାହ୍ୟ ବସ୍ତୁକୁ ଆଦର କରେ ଓ ଶେଷରେ ଶୋଚନୀୟ ଅବସ୍ଥାରେ ପତିତ ହୁଏ । ନୂତନ ପଦାର୍ଥ ଦୋଷବହୁଳ;ଦେଖ ନୂତନ ଗୁଡ଼ କେଡ଼େ ମଧୁର, ଅଥଚ କେଡ଼େ ଅବଗୁଣ କରେ; କିନ୍ତୁ ଯେତେ ଦୀର୍ଘ-କାଳ ଅତିବାହିତ ହେଉଥାଏ, ତାହା ତେତେ ଗୁଣକାରକ ହେଉଥାଏ ପୁଣି ଦ୍ରବ୍ୟର ଅବଗୁଣ ଥିଲେ ସୁଦ୍ଧା, ତାହାର ଅଦୂଷଣୀୟ ଗୁଣ ସର୍ବଦା ଗ୍ରହଣୀୟ । ସକଳଙ୍କ ଶୀତକର ଚନ୍ଦ୍ର ସମସ୍ତଙ୍କର ଆନନ୍ଦବର୍ଦ୍ଧନ ଓ ଶିବ-ଶିରୋଭୂଷଣ; କୃଷ୍ଣ କୋକିଳର ବାଣୀ ସର୍ବଜନାଦୃତ; ପ୍ରାଣହର କୁଣ୍ଡଳୀର ମଣି ନରଚକ୍ଷୁରେ ଅତି ମୂଲ୍ୟବାନ, ନିମ୍ବଜାତ ଚନ୍ଦନ ହୃଦରେ ଓ ଭାଲରେ ବିଲେପିତ, ଏବଂ ଶୁକ୍ତିକା-ସମ୍ଭୂତ ମୁକ୍ତା କଣ୍ଠରେ ମାଳୀକୃତ ହେଉଅଛି । ଆଉ କେତେ କହିବି; କେବଳ ଗୁଣଥିଲେ ସମସ୍ତେ ରସନ୍ତି, ଅବସ୍ଥା-ଭେଦରେ ନୁହେଁ କି ପାତ୍ର ବିଶେଷରେ ନୁହେଁ । ତଥାପି ଜଣେ ଜଣେ କୁପୁରୁଷ ଶ୍ରେୟପଥ ଛାଡ଼ି ପ୍ରେୟପଥ ଅନୁସରଣ କରନ୍ତି, ଏବଂ ଇନ୍ଦ୍ରିୟାନ୍ଧ ହୋଇ ଇହସୁଖ ନିମିତ୍ତ ହୀନଦ୍ରବ୍ୟରେ ଅଭିଳାଷ କରନ୍ତି । ଏବେ ମନ ଆନନ୍ଦରେ ସଜଳ ନୟନରେ ବିଦାୟ ଦିଅ; କରଧରି କହୁଛି ମୋତେ ମନେ ପକାଉଥିବ । ମେରୁପର୍ବତରେ ମନ ମାନି ଥିବାରୁ ସୂର୍ଯ୍ୟ ଯେପରି ସେଠାରୁ ନିତି ଯାଇ ସେଠାକୁ ନିତି ଫେରିଆସେ, ସେହିପରି ମୁଁ ତୁମ୍ଭ-ମାନଙ୍କୁ ମୋ ମନ ଦେଇଥିବାରୁ ପୁଣି ଫେରି ଆସିବାପାଇଁ କେବଳ ଶରୀରଟି ନେଇ ଗମନ କଲି । ତୁମ୍ଭଆଡ଼କୁ ପିଠିକରି ଗମନ କରୁଛି; ଏବେ ଯେ ଯାହା କର୍ମ ଯାଇ କର ।”

ଏହିପରି ସାନ୍ତ୍ୱନାବାଣୀ କହି ଶ୍ରୀହରି ଯେତେବେଳେ ଅନ୍ତର ହେଲେ,ଗୋପୀମାନେ ନିମେଷ ନପକାଇ ଅନାଇରହିଥିଲେ । ରଥ ଅଦୃଶ୍ୟ ହେଲା ମାତ୍ରକେ ଗୋପୀମାନେ କପାଳରେ ହାତ ମାରି, “ହା ହରି, ଆମ୍ଭେମାନେ ଅନାଥା ହେଲୁଁ, ସକଳ ବାସନା ହରି ନେଲେ ।” ଏହିପରି ମହା ସନ୍ତାପ କରି ଯେ ଯାହା ମନ୍ଦିରରେ ପ୍ରବେଶ କଲେ । କେହି ବିକଳ ହେଲା; କେହି ଅଶ୍ରୁବାରି ଢାଳିଲା, କେହି ଦୀର୍ଘନିଃଶ୍ୱାସ ଛାଡ଼ିଲା; କେହି

ଚିତ୍ରପଟରେ ବା ଚନ୍ଦ୍ରପଟରେ କୃଷ୍ଣରୂପ ଅଙ୍କି ବସିଲା ଏବଂ କେହି ସଖୀ ସଙ୍ଗରେ କୃଷ୍ଣବିଷୟକ କଥୋପକଥନ କଲା; ମାତ୍ର ସମସ୍ତଙ୍କ ମନ ରଥ ପଛେ ପଛେ ଗୋଡ଼ାଉଥିଲା ।

ମଥୁରାରେ ଉପସ୍ଥିତ ହୋଇ ଅମିତବିକ୍ରମ ଶ୍ରୀକୃଷ୍ଣ କଣ ନକଲେ ! ସେ ରଜକ ମସ୍ତକ ହାଣି ବସ୍ତ୍ରଯାକ ଜୁର କଲେ; କୁବୁଜା କୁଜ ହରି କୁବଳୟା ହସ୍ତୀକୁ ମାରି ମଲ୍ଲ-ମାହୁନ୍ତଙ୍କୁ ବିନାଶ କଲେ; ଉପରେ କଂସ ନାଶକରି ମାଈମାନଙ୍କୁ ପ୍ରବୋଧାନ୍ତେ ଜନକ ଜନନୀଙ୍କୁ କାରାମନ୍ଦିରରୁ ମୋଚନ କଲେ । ଅନନ୍ତର ଅଜାକୁ ରାଜା କରି କାଳଦମନକୁ କାଳସଦନକୁ ପଠାଇଲେ । ତଦନନ୍ତର ସମୁଦ୍ର ମଧ୍ୟରେ ଦ୍ୱାରକା ନାମକ କନକମୟ ପୁରୀ ରଚନା କରି କୁଣ୍ଡୀ-ନୃପତି-ସୁତାଦି ଅଷ୍ଟପାଟମହିଷୀଙ୍କ ସଙ୍ଗରେ ବିହାର କଲେ । ପୁଣି କୁରୁ-କୁଳ ଧ୍ୱଂସ କରି ପାଣ୍ଡବମାନଙ୍କୁ ଦୁଃଖସାଗରରୁ ଉଦ୍ଧାର କଲେ ଓ ରାକ୍ଷସକୁଳ ନିର୍ମୂଳ କରି ରାକ୍ଷସୀମାନଙ୍କୁ କରକଙ୍କଣଶୂନ୍ୟା କଲେ । ତତ୍ପରେ ଇଚ୍ଛାମୟ କୌଶଳରେ ଯଦୁକୁଳକୁ ଛାରଖାର କରି ଧରାପୃଷ୍ଠରେ ଶାନ୍ତି ରାଜତ୍ୱର ପ୍ରତିଷ୍ଠା କଲେ ଏବଂ ନିଜେ ଅବଶେଷରେ ଶବର-ଶରଘାତ ଛଳରେ ନରରୂପରୁ ଅନ୍ତର ହୋଇ ବିଶ୍ୱରୂପରେ ବିରାଜ କଲେ ।

ଯାହାଙ୍କର ଏବମ୍ବିଧ ଅଲୌକିକ ଅଦ୍ଭୁତ କର୍ମସାଧନର ଶକ୍ତି ଥିଲା, ସେ ପୁଣି ଅକ୍ରୂର କଥା ମାନି ରଥରେ ବସିଲେ ଏବଂ ମଥୁରା ତୋଟାରେ ଆସି ରହିଲେ । ଅକ୍ରୂର ସେହିଲାଗେ ପ୍ରଭୁଙ୍କର ବିଜୟବାର୍ତ୍ତା କଂସନୃପତି ଆଗରେ ଜଣାଇଲେ । ଭକ୍ତମାନେ ଏହି ଅବସରରେ ବୃକ୍ଷାନ୍ତରାଳରେ ଭଗବାନଙ୍କର ମାନସୀୟ ମୂର୍ତ୍ତି ଦର୍ଶନ କରି ଅଶେଷ ତୃପ୍ତି ଲାଭ କଲେ ।



## ସପ୍ତବିଂଶ ପରିଚ୍ଛେଦ ।

---

ରାମକୃଷ୍ଣ କଂସ କଟକରେ ପ୍ରବେଶ କଲେ । ମଥୁରାବାସୀ ମଥୁରା-ମୋହନଙ୍କ ଦର୍ଶନ କରି କହିବାକୁ ଲାଗିଲେ,—"ଏ କୋଟିକାମନିନ୍ଦି ଅପୂର୍ବ ରୂପକାନ୍ତି ବିଧି କେତେକାଳ ବସି ଗଢ଼ିଥିଲା । ଅଭିନବ ତରୁଣ-କଳ୍ପତରୁ କାମିକାମ ପୂରଣ କରିବାପାଇଁ କି ସ୍ୱର୍ଗରୁ ମର୍ତ୍ତ୍ୟକୁ ଓହ୍ଲାଇ ଆସିଲେ ? ଇନ୍ଦ୍ରଧନୁ ମଣ୍ଡିତ ହୋଇ ରାମଶାରଦ-ମେଘ ପାଶରେ ଶୋଭା ପାଉଅଛି କି ? ଅବା ଗଙ୍ଗା-ଯମୁନା-ଯୁଗଳତୀର୍ଥ ମଥୁରା ଲୋକଙ୍କୁ କୃତାର୍ଥ କରିବାପାଇଁ କଂସରାଜ-ଘଣ୍ଟାପଥରେ ଗତି କରୁଅଛି; କିମ୍ବା କୌଣସି ଐନ୍ଦ୍ରଜାଲିକ ରାଟ ଦୁଇଟି ରୂପାମାଳା ପ୍ରତିମା ମର୍ତ୍ତ୍ୟରେ ନାଟ କରାଉଅଛି ।" ଏ ଜୀବନ୍ତ ଅଦ୍ଭୁତ ମୂର୍ତ୍ତିର ଦର୍ଶନପାଇଁ ଲୋକମାନେ ଅସମ୍ଭାଳ ବେଶ-ଭୂଷାରେ ଗୃହଆଡ଼ୁ ମାଡ଼ି ପଡ଼ିଲେ । ବାଇ ହୋଇ ଧାଇଁଲା ବେଳେ କାହାର କେଶ ଫିଟିଗଲା, କାହାର ବାସ ଖସିଗଲା, ଏକ କରରେ କେଶଗୁଚ୍ଛ ଖୋସି ଖୋସି ଏବଂ ଅନ୍ୟ କରରେ ବାସ ସମ୍ଭାଳି ସମ୍ଭାଳି କେହି ଧାଇଁଲା, ଧାଇଁ ଧାଇଁ 'ଶ୍ରୀକୃଷ୍ଣ କାହିଁ', 'ଶ୍ରୀକୃଷ୍ଣ କାହିଁ' କହିଲା । ପରିଚ୍ଛଦ ବିଭିନ୍ନ ହେଲାବେଳେ କେହି ତାହା ପୁନଃ ପୁନଃ ଅଙ୍ଗରେ ଆଚ୍ଛାଦନ କରି ଧାବମାନ ହେଉଥିଲା ମାତ୍ର ଦ୍ରୁତଗମନ ହେତୁ ଦିଗମ୍ବର ପରି ଅନମ୍ବର ହୋଇଯିବାର ଭୟ ତାହାର ମନକୁ ଛୁଇଁ ନଥିଲା । କାହାର ମୋତିହାର ଚଞ୍ଚଳ ଗଳିତ ହେଉଥିଲା ଏବଂ କାହାର ବାହୁଗଙ୍ଗାଧାର ପରି ଅତଶସ୍ର ଉଛୁଳି ପଡ଼ୁଥିଲା । ଏପରି ରୂପକୁ ଯାହାର ନେତ୍ର ଦର୍ଶନ କଲା, ତାହାର ନେତ୍ରହିଁ ନେତ୍ର ମଧ୍ୟରେ ଲେଖା; ଯେ କେଉଁ କାଳରେ ତପସ୍ୟା କରିଥିଲା, ସେ ସେ ଶୋଭାସଦନକୁ ଡୋଳାରେ ଦର୍ଶନ କଲା । ତାଙ୍କର ଅଙ୍ଗଶୋଭା ତୁଳନାରେ ଅନ୍ୟ ଶୋଭା ମହୀପ୍ରାନ୍ତ ମଳିନ ଦିଶିଲା ।

ସେ କି କୁହୁକୀ ? ନୋହିଲେ, ତାଙ୍କର ଇଚ୍ଛା ଓ ଆବିର୍ଭାବ କୁହୁକ ପ୍ରାୟ ସର୍ବସ୍ୱ କାର୍ଯ୍ୟ କଲା କିପରି ? ଶ୍ରୀହରି ନିକୃଷ୍ଟରୁ ଆରମ୍ଭ କରି ଉତ୍କୃଷ୍ଟ ପର୍ଯ୍ୟନ୍ତ ସର୍ବଶ୍ରେଣୀସ୍ଥ ବିଭିନ୍ନ-ଦେବପୂଜକମାନଙ୍କର ମନକୁ ଅବଲୀଳାକ୍ରମେ ଆକର୍ଷଣ କରି କ୍ରମଶଃ ସେମାନଙ୍କର ଉତ୍କଣ୍ଠା ବର୍ଦ୍ଧନ-କଲେ । ସେମାନେ ନିଜନିଜକୁ କୁହୁକସ୍ଖଳିତ ମନେକରି ଭରସାହୀନ ହେଲେ । ମୃଗତୃଷ୍ଣାକୁ ଆଶା କରି ମରିଥିବାରୁ କୁରଙ୍ଗ କଳାକର ଅଙ୍କରେ ସ୍ଥାନ ପାଇଲା; ତେବେ ଏମାନେ କାହିଁକି ନିଜକୁ ଭରସା-ହୀନ ମନେକଲେ । ଯେ କୃଷ୍ଣଠାରେ ମନଦିଏ, ସେ କି ନିରାଶ୍ରୟ ହୋଇପାରେ ? ନିରାଶ୍ରୟ ଭାବ ଅବିଶ୍ୱାସମୂଳକ । ବିଶ୍ୱାସର ଦୃଢ଼ତା ସଙ୍ଗେ ସଙ୍ଗେ ଭରସାହୀନଭାବ ଲୋପ ପାଏ । ଫଳତଃ ଅବଶେଷରେ ମଥୁରାବାସିଙ୍କର ବିଶ୍ୱାସ-ଦୃଢ଼ତା କ୍ରମଶଃ ବୃଦ୍ଧିପ୍ରାପ୍ତ ହୋଇ କୁହୁକ ପରିବର୍ତ୍ତରେ ନିତ୍ୟବସ୍ତୁ ହିଁ ଦର୍ଶନ କଲା । ଦର୍ଶନ କରିବା ପୂର୍ବରୁ କେହି ପୀତବାସଙ୍କୁ ହୃଦୟରେ ବରଣ ଓ ଅଙ୍ଗୀକାର କରିନେଇଥିଲା । ଏବେ ସେ ଦର୍ଶନ କରି ସେ ଶୋଭାମାଧୁରୀକୁ ନୟନରେ ସହସ୍ରବାର ପାନକଲା ।

କୁଳବଧୂମାନେ ଅନ୍ତଃପୁରରେ ଥାଇ ଜାଲବିବରରେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରୁଥିଲେ । କନକକାନ୍ତି ଦେହରେ ରତ୍ନବେଶ ଝଲକି କେତେ-ବେଳେ ଦୃଶ୍ୟ କେତେବେଳେ ଅଦୃଶ୍ୟ ହେଉଥିଲା; ବଧୂରୂପ କାର୍ତ୍ତିକମାସର ଆକାଶଦୀପ ପରି ଉଚ୍ଚରେ ଶୋଭିତ ହୋଇଥିଲା । ଶ୍ୱେତମେଘରୁ କଳାନିଧି ବାହାରିଲା ପ୍ରାୟ କାମିନୀ-କାନ୍ତମୁଖ ମେଲା ଗବାକ୍ଷରୁ ବାହାରିଥିଲା; ସୁନୀଳ ଚଞ୍ଚଳ ନୟନ ଜାଳକବାଟିରେ ଚଞ୍ଚଳ ଖେଳି କବିଙ୍କୁ ବଣାକରୁଥିଲା; କବି ଉପମା ନ ପାଇ ସମ୍ବଳହୀନ ହୋଇ ଭାବିଲେ, "କେହି ଦୁଇଟି ଖଞ୍ଜନ ନେଇ ପିଞ୍ଜରାରେ ପୂରାଇ ବନ୍ଦୀ-କରିଛି କି ?"

ଏହିରୂପେ ସକଳେ ଯେ ଯାହା'ମତରେ ଦେଖୁଥିଲେ । କେହି ଭାବୁଥିଲା,—"ଏ କଳାଧଳା ମୂର୍ତ୍ତି ଧନ୍ୟ; ମନ୍ଦଗତିରେ କ୍ଷିତିକୁ ମନ୍ତ୍ରୁଛନ୍ତି ।

କୋଟିବ୍ରହ୍ମାଣ୍ଡରେ ଏମାନଙ୍କର ଉପମା ନାହିଁ; ଏହିମାନେହିଁ ଏମାନଙ୍କର ଉପମାସ୍ଥଳ; କେଉଁ ରୁଦ୍ର, ଇନ୍ଦ୍ର ବା ଚନ୍ଦ୍ର ଏହାଙ୍କ ସରି ହେବ ? ସେମାନେ ଏକେ ଏକେ ଭସ୍ମ, ସହସ୍ରଲୋଚନ, ଓ କଳଙ୍କକୁ ଭୂଷଣକରିଥିବା ଦୋଷରେ ଦୂଷିତ; କଳ୍ପତରୁ ଓ ଚିନ୍ତାମଣି କାଷ୍ଠପାଷାଣ ଭିନ୍ନ ଅନ୍ୟ କିଛି ନୁହେଁ; କନ୍ଦର୍ପ ତ ଦହନ-ପ୍ରାପ୍ତ ଅନଙ୍ଗ; ସୁତରାଂ କବିମାନେ ଯେ ଭ୍ରାନ୍ତ ହୋଇ ଏମାନଙ୍କୁ ଲକ୍ଷ୍ୟସ୍ଥଳ କରନ୍ତି, ତାହା ମିଛକଥା ବୋଲି ଆଜ ଜଣାଗଲା; ନଖରୁ ଶିଖସରିକି କହିବସିଲେ, ଏମାନେ କେତେ ନିନ୍ଦା ପାଇବେ; ଏ ମୂର୍ତ୍ତିଲଲାମକୁ ଦର୍ଶନ କରି କେଉଁ ଇଷ୍ଟଦେବ-ବ୍ରତୀର ବ୍ରତ-ଭଙ୍ଗ ନ ହେବ ? ଗୋପବାସିମାନେ କି ତପସ୍ୟା କରିଥିଲେ ଯେ ଏ ରୂପକୁ ନିତି ଦର୍ଶନ କରୁଥିଲେ; ସେମାନେ କେତେ କାଳ କୋଳକରି ରାମକୃଷ୍ଣଙ୍କର ବାଳକାଳ କଟାଇଲେ; କିନ୍ତୁ କିଶୋର ବେଳରେ ବିଧାତା ଏମାନଙ୍କୁ ଛଡ଼ାଇ ଆଣିଲା; ଆହା ! ସେମାନେ କିପରି ଧୃତି ଧରିଥିବେ ! ଏମାନଙ୍କର ଗୁଣ ଓ କୌତୁକ କଥାମାନ ଅସ୍ତ୍ରପରି ସେମାନଙ୍କର ବକ୍ଷ ବିଦାରଣ କରୁଥିବ; ସେମାନେ କର୍ପୂର-ଚନ୍ଦନକୁ ବିଷ ସମ ମଣୁଥିବେ; କୋକିଳସ୍ୱରରେ ବଜ୍ରଘାତ ପରି ପ୍ରମାଦ ଗଣୁଥିବେ; ସେମାନଙ୍କ ପକ୍ଷରେ ଏପରି ହେବା ଅତି ତୁଚ୍ଛ କଥା, କାରଣ କୃଷ୍ଣଙ୍କୁ ତ୍ୟାଗ କରିବା ପରି ଦୁର୍ବିପାକ ସଂସାରରେ କଣ ହୋଇପାରେ ? ତାଙ୍କୁ ଦେଖିଲା ବେଳରୁ ମୋ ମନ ତ କଣ ହୋଇଯାଉଛି ! ସେମାନଙ୍କର କଣ ହେଉ ନ ଥିବ ! ଯେ ଦୁଃଖୀ ସେହି ସିନା ଦୁଃଖୀର ଦୁଃଖ ବୁଝେ; ଅନ୍ୟ କାହୁଁ ବୁଝିବ ?"

ମଧୁପୁରବାସିମାନେ କୃଷ୍ଣଦର୍ଶନ କରୁଁ କରୁଁ ଏହିପରି ନାନା କଥାବାର୍ତ୍ତା କରିବାକୁ ଲାଗିଲେ ଓ ହୃଦରେ ନାନା କଥା ଚିନ୍ତା କରିବାକୁ ଲାଗିଲେ । ତେଣେ ପ୍ରଭୁ ଚକ୍ରପାଣି ରାଜରଜକକୁ ଦେଖି କହିଲେ, "ଭାଇ, କିଛି ବସନ ଦେବୁ କି ? ତୁ ଆମ୍ଭର ହୋଇ ଏତିକି କଲେ, ଆମ୍ଭେମାନେ ବସନ ପିନ୍ଧି କଂସରାଜ ରଙ୍ଗସଭା ଦେଖିବାକୁ ଯାଆନ୍ତୁ ।"

ରଜକ ତାଚ୍ଛଲ୍ଲ ଭାବରେ ଓ ଗର୍ବିତ ସ୍ୱରରେ ଉତ୍ତର କଲା,—"ଜାତିରେ ଗଉଡ଼; ତହିଁରେ ପୁଣି 'ଅପାଠିଆ' ଦେଶରେ ବଢ଼ିଲ; କଂସରାଜ ବସନକୁ ମନ ନ ବଳିବ କାହିଁକି ? ବରେ ମେଲିଥାଏ, କିଛି ଧନ ଅର୍ଜିଛ କି ? ନା, ଗୋପରେ ଯେପରି ଡକା କର, ମଥୁରାପୁରରେ ସେହିପରି ଡକା କରିବାପାଇଁ ମନ କରିଛ ? କଂସ ମହାରାଜଙ୍କର ବସନକୁ ମନ ! ହର୍ଯ୍ୟକ୍ଷ ଗହ୍ୱରରେ କୁରଙ୍ଗର ନାଟ ! କାହାର ବଳପାଇ ଏଡ଼େ ଆଣ୍ଠ କରିଛ ? ମୁଁ କହୁଛି ଶୁଣ, ବେଳାବେଳ ଲେଉଟି ପଳାଅ; ନୋହିଲେ କାଳଦେବତା ସଙ୍ଗରେ ଭେଟ ହୋଇ ଯିବଟି । ସରଖିଆ ହୋଇ କାଳଯାକ ଦଧିଦୁଧ ଛଡ଼ାଇ ଖାଇଛ ବୋଲି କଣ କଟକରେ ଆସି ସେହି ବଡ଼ାଇ କରୁଛ ?" ରଜକର ଉଦ୍ଧତ କଥାଶୁଣି ଶ୍ରୀଧର ଧୀର-ଗମ୍ଭୀର ସ୍ୱରରେ କହିଲେ,—"ତୋର ଜ୍ଞାନ ଯେତେ ଦୂର, ତୁ ତାଠାରୁ ଅଧିକ ଦୂରର ଖବର କାହୁଁ ଜାଣିବୁ; ହାୟ, ଯେତେ ବସନ-ମଳ ଛଡ଼ାଇଲୁଣି, ଯଦି ତାହାର ଶତାଂଶ ମନମଳ ଛଡ଼ାଇଥାନ୍ତୁ ! ତୁ କାହା ପ୍ରତାପରେ ଏଡ଼େ ପ୍ରତାପୀ ? ଆମ୍ଭେ ରାଜାଙ୍କର ଭଣଜା; ତୁ ଆମ୍ଭମାନଙ୍କୁ ଏପରି ତର୍କିଗର୍ଜି କଥା କହୁଛୁ ?" ଏହିପରି କହୁଁ କହୁଁ ବୈରୀନିସୂଦନ ହରି କୋଟି କୋଟି ଦୁଷ୍ଟଙ୍କର ସୁଶିକ୍ଷା ନିମିତ୍ତ ଗୋଟିଏ ଦୁଷ୍ଟକୁ ବିନାଶ କରିବାପାଇଁ ବିସ୍ତୃତ କଲେ ଏବଂ କପଟ କୋପରେ ଗୁପୁଡ଼େ ମାରି ରଜକର ପ୍ରାଣ ନେଇଗଲେ । ସେ କଳୁଷ ପକାଇ ନିର୍ବାଣ ପାଇଲା । କୃପାନିଧିଙ୍କର କୋପ ଓ କୃପା ଏହି ପ୍ରକାର । ମୁକ୍ତି-ଦ୍ୱାର ଶତ୍ରୁମିତ୍ର ସକଳଙ୍କ ପାଇଁ ସର୍ବଦା ଉନ୍ମୁକ୍ତ । ଧନ୍ୟ ଭଗବାନ, ଆପଣଙ୍କ ସଙ୍ଗରେ ଶତ୍ରୁତା କଲେ ବି ସ୍ୱର୍ଗମିଳେ ।

କେହି ଦେଖଣାହାରି ଚକିତ ହୋଇ କହିଉଠିଲା,—"ପୁଅଟି କଣ କଲା ! ପଟାସ୍ କି ଗୁପୁଡ଼େ ମାରି ରଜକର ମୁଣ୍ଡ ଗଣ୍ଡିରୁ ଛିଣ୍ଡାଇ-ଦେଲା ! ଆଉଜଣେ କହିଲା,—'ତୁମ୍ଭେ ଏମାନଙ୍କର ଗୁଣ ଶୁଣିନାହିଁ କି ? ଏ ପରା ପୂତନା ପ୍ରାଣ ଏକା ଶୋଷକେ ଶୋଷିଥିଲେ, କୁମାର ବତ୍ସ-

କାଳରୁ ଏହାଙ୍କର ଏତେ ସାହସ ଯେ, କଂସ ଯେତେ ଯେତେ ଥର ଏହାଙ୍କୁ ବିନାଶ କରିବାପାଇଁ ପଠାଇଲା, ସେ ସମସ୍ତଙ୍କୁ ଏ ଗୋଟି ଗୋଟି ସଂହାର କଲେ; ଏହାଙ୍କର କର୍ମ୍ମମାନ ବଡ଼ ଅଦ୍ଭୁତ; ଏ ଗୋବର୍ଦ୍ଧନ ଧାରଣ କରିଲେ, ଦାବାନଳ ଭକ୍ଷଣ କଲେ, ଅନ୍ଧକୁ ଲୋଚନ ଦେଲେ, ଠାକୁରଙ୍କୁ ଜଳେ ପକାଇ ନିଜେ ଖଟୁଲିରେ ବସି ମାଙ୍କୁ ଆଶ୍ଚର୍ଯ୍ୟ-ରୂପ ଦେଖାଇଲେ, ଏବଂ କୋଳି ଗୋଟିଏ ନେଇ ପାଚୁଆକ ଜନ୍ୟ କୋଳିକୁ କାଞ୍ଚନ ଖଣ୍ଡରେ ପରିଣତ କଲେ; ପୁଣି ଦିନେ ମା ବାନ୍ଧିବାକୁ ଗଲରୁ ସେ ମାୟାକର କାୟା ଏତେ ବଢ଼ାଇଲେ ଯେ, ମାତା ଯେତେ ଦଉଡ଼ି ଖଞ୍ଜିଲେ, ତାହା ତାଙ୍କୁ ବାନ୍ଧିବାକୁ ପାଇଲାନାହିଁ । ଏହିପରି ତାଙ୍କର ବିଚିତ୍ର ଚରିତ ସବୁ କିଏ କହିପାରିବ ? ତାହାଙ୍କୁ କି କଅଁଳାପୁଅ କହି ପାରିବ ? ଧରଣୀରେ ଯାହାଙ୍କର ଏପରି କରଣୀ, ତାଙ୍କୁ ପୁଣି ନାଶ-କରିବାପାଇଁ କଂସ କୂଟ କରୁଅଛି ! ଉତ୍ତମ ଲୋକମାନେ କାହିଁକି କିଛି କହୁନାହାନ୍ତି ? ହିଁ, ଯେଉଁଠାରେ ବିବେକ ନାହିଁ, ସେଠାରେ ସାଧୁବାଦ କଲେ କଣ ହେବ ? ସତ୍ୟବାଦୀର ଅମଙ୍ଗଳ ଲାଭହିଁ ସାରହିବ । କେବଳ ସତ୍ୟକଥା କହିବାଯୋଗୁଁ ତ ବିଭୀଷଣକୁ ଲଙ୍କାରେ ବାସ ମିଳିଲାନାହିଁ । କାଳ ଘୋଟିଲେ ପ୍ରାଣୀକୁ ବୁଦ୍ଧି ଦିଶେନାହିଁ, ଏହା ବିଧି-ସିଦ୍ଧ ଓ ପୂର୍ବ-ପ୍ରସିଦ୍ଧ ।"

ରଜକ ନାଶ କରି ଶ୍ରୀକୃଷ୍ଣ ବସନଜୂର କଲେ । ରାମକୃଷ୍ଣ ନୀଳପୀତ ଅମ୍ବର ଗ୍ରହଣ କଲେ । କଂସ-ଗଣ୍ଡାଇତ ସୁଖୀ ହେଲବୋଲି ଦେଖାଇ ସଭସ୍ତ ଅନ୍ତରରେ ଥାଇ ଦୁଇଙ୍କୁ ଉତ୍ତମରୂପେ ବସ୍ତ୍ର ପିନ୍ଧାଇ ଦେଲା । ମାଳାକାର କୁସୁମ ମାଳା ପ୍ରଦାନ କଲା । ତ୍ରୈଲୋକ୍ୟ ଶୋଭାଧାର ରାମ-ଗୋବିନ୍ଦ କେଶବେଶ କରି ଆନନ୍ଦରେ ବିଜୟ କରୁଁ କରୁଁ କୁବୁଜା-ନାଗରୀ ଆସୁଥିବାର ଦେଖିଲେ । ତାହାର କାଖରେ ଗନ୍ଧପେଟୀ ଓ ପିଠିରେ କୁବ୍ଜ । ପୂର୍ବ-ପରିଚିତ ଭ୍ରାନ୍ତ ଶ୍ରୀକୃଷ୍ଣ ଅତି ଆଦରରେ ପଚାରିଲେ,—"କୁବୁଜା, ତୁ କାହା ଭାର୍ଯ୍ୟା କହ; କେତେ ନାଗରୀ-ଧ୍ୱଜା କରିବା ?"

କୁବୁଜା କହିଲା,—"ମହାପ୍ରଭୁ, ମୁଁ ରାଜାଙ୍କର ନିଯୋଗିନୀ; କର୍ପୂର ଚନ୍ଦନ ଦେଇ ମୁଁ ରାଜାଙ୍କୁ ନିତ ସେବା କରେଁ; କୁଜ-କଳଙ୍କ ହେତୁ ଅସୁନ୍ଦର ହେବାରୁ ମୋତେ କେହି ବଶ କଲେ ନାହିଁ; ଆପଣଙ୍କୁ ଦେଖି କୃତାର୍ଥ ହେଲି; ମନରେ ଏତିକି ଶ୍ରଦ୍ଧା ହେଉଛି, ଏ କଳା ଶ୍ରୀଅଙ୍ଗକୁ ଚନ୍ଦ୍ର ଚନ୍ଦନରେ ମଣ୍ଡନ୍ତି।" କୃଷ୍ଣ କହିଲେ, "ତୋର ଏ ସଂସାରଛଡ଼ା ଇଚ୍ଛା ତୋହର ଶରୀରକୁ ରୁଚ୍ଛ କରିଅଛି।" ବ୍ରଜରାଜଙ୍କର ଏ ସ୍ନେହବାଣୀ ଶୁଣି କୁବୁଜା ଅଧିକତର ଭକ୍ତି-ପ୍ରେମ-ପ୍ରଣୋଦିତ ହୋଇ ବାସନା ପୂରଣ କରିବାକୁ ମାନସ କଲା। ଅନନ୍ତର ସୁଗନ୍ଧ-ପେଟିକା ବାହାରକରି କିଏ ବଡ଼ କିଏ ସାନ ହୃଦରେ ବିଚାରି ଆଗେ କାମପାଳଙ୍କ ଭାଲରେ ଗନ୍ଧ ତିଳକ ଦେଲା ଏବଂ ପରେ କେଶବଙ୍କ କପାଳରେ ସ୍ୱରୁଚନ୍ଦନ ଚିତା ଲଗାଇଲା। ଚିତା କଳାମେଘରୁ ଚନ୍ଦ୍ର ଦେବତା ବାହାରି ଆସିଲାପ୍ରାୟ କୃଷ୍ଣ ଲଲାଟରେ ଶୋଭା ପାଇଲା। ପୁଣି କର୍ପୂର, ଚନ୍ଦନ ଓ ଗନ୍ଧ କୁଙ୍କୁମକୁ ଏକାଠି ଗୋଳି ରାମ କୃଷ୍ଣଙ୍କ ଶ୍ରୀଅଙ୍ଗରେ ଧୀରେ ଧୀରେ ବୋଳି ଦେଲା। କୃପାସିନ୍ଧୁ ଦୀନବନ୍ଧୁ କୁବୁଜାର ଭକ୍ତି ଦେଖି କରୁଣା କରି ତାହାର ପୃଷ୍ଠରେ ଚରଣ ଦେଲେ ଏବଂ ଚିବୁକ ଧରି କରରେ ତାହାକୁ ଟେକିଲେ; ଆଶ୍ଚର୍ଯ୍ୟ କଥା, କୁଜ କୁଆଡ଼େ ଗଲା! କୁବୁଜା କାମିନୀକୁଳମଣ୍ଡନା ହୋଇ ପୀତାମ୍ବରଙ୍କ ପୀତାମ୍ବର ଧରି ବିନୀତ ଭାବରେ ପ୍ରାର୍ଥନା କଲା, "ପ୍ରଭୋ, ମୋ ପୁରକୁ ବିଜୟକରି ମୋର ଏ କ୍ଷୁଦ୍ର ମନୋବାଞ୍ଛା ପୂର୍ଣ୍ଣ କରନ୍ତୁ ଏବଂ ଭବ-କଷ୍ଟରୁ ମୋତେ ତ୍ରାଣ କରନ୍ତୁ।" ଭକ୍ତସଖା ଶ୍ରୀହରି ହସିଲା ହସିଲା ହୋଇ କହିଲେ, "ରାଜାଙ୍କ ଭେଟ ବତାଇ ତୋ ପୁରକୁ ଗମନ କରିବୁଁ।"

ଏହିପରି କୁବୁଜାକୁ ବୋଧକରି ଶ୍ରୀକୃଷ୍ଣ ରାମଙ୍କ ସହ ଯାଇ କାର୍ମ୍ମୁକ-ମନ୍ଦିରରେ ପ୍ରବେଶ କଲେ। ସେଠାରେ ଇତସ୍ତତଃ ନିରୀକ୍ଷଣ-କରି ଧନୁମାନଙ୍କରେ କେତେ ବଳ ଅଛି ଜାଣିବାପାଇଁ ସେମାନେ ସେମାନ କରରେ ଧରି କରିକରରେ ଇକ୍ଷୁଦଣ୍ଡ ପଡ଼ିଲାପ୍ରାୟ ଅନାୟାସରେ ଓଟାରି

ଖଣ୍ଡ ବିଖଣ୍ଡ କଲେ । ବ୍ରଜରାଜ ସେଦିନ ଏତେକ ଶୁଭକାର୍ଯ୍ୟକରି ରାଜୋଦ୍ୟାନରେ ବିଶ୍ରାମ କଲେ । ଗୋପାଳମାନେ ଗଉଡ଼ନାଟ ନାଚି ବେଣୁ, ଶୃଙ୍ଗ ଓ ବଂଶୀ ବଜାଇ ଝେମଟାବନ୍ଧରେ ସୁସ୍ୱରରେ ଗୀତ ଗାଇବାକୁ ଲାଗିଲେ । ଶ୍ରୀକୃଷ୍ଣ ଶୀତଳ ମଣୋହି ସାରି ସୁଖରେ ନିଦ୍ରାଗଲେ ।

କ୍ରମେ ରାତ୍ରି ପାହାନ୍ତା ହେଲା; କୁକ୍କୁଟ ଡ଼ାକିଲେ; ପୂର୍ବଦିଗ କୁଙ୍କୁମ-ରାଗରେ ରଞ୍ଜିତ ହେଲା; ବିପ୍ରମାନେ ସ୍ନାନକୁ ବାହାରିଲେ, ଦେବପୁରରେ ଶଙ୍ଖଧ୍ୱନି ହେଲା; କଳାକରପ୍ରିୟଚରମାନେ ମୌନ ହେଲେ; ନୀଳାଦ୍ରି-ପୁରରେ ସେବକମାନେ କବାଟ ଉଲଗିକଲେ; ଜଗଜ୍ଜୀବନ ଅପହ୍ନୁତ ହେଲେ; ତତ୍ପରେ ଗୋପବଲ୍ଲଭ ନିତ୍ୟ ପ୍ରାତଃକୃତ୍ୟ ସାରି ଆନନ୍ଦରେ ଗୋପାଳବଲ୍ଲଭ ସାରିଲେ; ତଦନନ୍ତର ସୁବଳ-ସୁଦାମ-ସଖାସଙ୍ଗରେ ଉପବନରେ ନାନାକ୍ରୀଡ଼ା ରଚନା କଲେ; ଗୋପ ବାଳକମାନେ ରାମସୈନ୍ୟପ୍ରାୟ କଞ୍ଚନ ଡ଼ାଳମ୍ବାଦି ବୃକ୍ଷମାନଙ୍କରେ ନାନାରଙ୍ଗରେ ଚଢ଼ି ଆରାମଉପଭୋଗ କଲେ; କେହି ମ୍ଳାନସାହସ ନୁହେଁ, ସମସ୍ତେ ପ୍ରସନ୍ନମୁଖ । ଏହିରୂପେ କିଛିକାଳ ଅତିବାହିତ ହେଲାପରେ ସମସ୍ତେ ରଙ୍ଗସ୍ଥଳ-ଦର୍ଶନମାନସରେ ବାହାରିଲେ, ବେଣୁଶିଙ୍ଗା ପ୍ରଭୃତିଧରି ବାଳକମାନେ କେହି ଆଗରେ କେହି ପଛରେ ଚାଲିଲେ; ନକ୍ଷତ୍ର ବେଷ୍ଟିତ କଳା-ନିଧି ପ୍ରାୟ କୃଷ୍ଣ ମଧ୍ୟରେ ବିଜୟ କଲେ । କେବଳ କାମପାଳ ଶ୍ରୀ କୃଷ୍ଣଙ୍କ ପାର୍ଶ୍ୱରେ ଚାଲୁଥିଲେ । ସେ ବେଳ ଓ ସେ ସ୍ଥଳର ଶୋଭା ଏବଂ କଟକରେ କୃଷ୍ଣଙ୍କର ସେ ଛଟକ-ଠାଣି ଭକ୍ତମନ ଅଳ୍ପକେ ହରୁଥିଲା । ଯେଉଁ-ମାନେ ମନକୁ ସ୍ଥିର ଆସନରେ ସ୍ଥାପି ନୋଧଗୁଢ଼ ଭକ୍ତିଭାବରେ ଶ୍ରୀକୃଷ୍ଣଙ୍କୁ ଦର୍ଶନକରୁଥିଲେ, ସେମାନଙ୍କର ହୃଦୟ ଆହ୍ଲାଦରେ ଦ୍ରବୀଭୂତ ହେଲା ଏବଂ କଳୁଷଶୂନ୍ୟ ହୋଇ କୈବଲ୍ୟ ଅଧିକାର କଲା ।

# ଅଷ୍ଟାବିଂଶ ପରିଚ୍ଛେଦ ।



ଶ୍ରୀକୃଷ୍ଣ ମଥୁରାଦାଣ୍ଡରେ ବିଜୟ କଲେ । କାନ୍ତି-କୋଟିକାମ-ଛବି ଖଣ୍ଡି ମନୋହର ହେଲା; ମୁଣ୍ଡରେ ମୟୂରପୁଚ୍ଛ ଇନ୍ଦ୍ରକୋଦଣ୍ଡପ୍ରାୟ ଶୋଭା ପାଇଲା; କପାଳରେ ଗୋରଚନାଚିତା ଊର୍ଦ୍ଧ୍ୱରେଖା ଯତିଙ୍କୁ ହତଚେତା କରୁଥିଲା; ନାସାରେ ମୋତିବର କଳାକର କୋଳରେ ରୋହିଣୀ ପ୍ରାୟ ଶୋଭା ବିକାଶୁଥିଲା; କର୍ଣ୍ଣରେ ମକରକୁଣ୍ଡଳ ତେଜରେ ରବିମଣ୍ଡଳକୁ ନିନ୍ଦାକରୁଥିଲା; କଣ୍ଠରେ ନକ୍ଷତ୍ରମାଳା ଓ ବକ୍ଷରେ ମାଳା-ମଧ୍ୟମଣି କୌସ୍ତୁଭ ନୀଳମଣିମୟ ଗଗନରେ ତାରା-ପୁଞ୍ଜବେଷ୍ଟିତ-ନିଶାମଣି ସଦୃଶ ଶ୍ରୀ ଧାରଣ କରିଥିଲା । କନକନିଭ ପତମ୍ବାପାଗର ଲଞ୍ଜି; ମହୀରେ ଲୋଟିଯାଉଥିଲା; ସୁଖସଂସାର ସୃଷ୍ଟି କରିବାପାଇଁ ଅଭିନବ ପରମେଷ୍ଠି ଏ ଦୁଃଖ-ସଂସାରକୁ ଆଗମନ କରିଥିଲେ କି ? କଟାକ୍ଷରେ ସୁଧାବୃଷ୍ଟି କରି ସେ ସୃଷ୍ଟିକୁ କୃତାର୍ଥ କରୁଥିଲେ; ନେତ୍ରର ବାମଦକ୍ଷିଣ-ଚଞ୍ଚଳଗତି ଦର୍ଶକଙ୍କୁ ସ୍ତମ୍ଭିତ ଓ ମୋହନକରି ବଶକରୁଥିଲା । ଏ ନବ-ଘନଶ୍ୟାମମୂର୍ତ୍ତି ଦର୍ଶନକଲେ ଭକ୍ତ ସାକ୍ଷାତ ଆଖଣ୍ଡଳ-ପଦ ପାଇପାରେ ।

ମଧୁପୁର ନରନାରୀ ନିବିଷ୍ଟମନରେ ଦର୍ଶନ କରୁଁ କରୁଁ ଶ୍ରୀହରି କଂସସିଂହଦ୍ୱାରରେ ଉପସ୍ଥିତ ହେଲେ । ସେଠାରେ କୁବଳୟା ଦନ୍ତାବଳ ଦେଖି ଶ୍ରୀକୃଷ୍ଣ ଉଚ୍ଚହୋଇ କୋମଳ ସ୍ୱରରେ କହିଲେ,—"ହେ ଯନ୍ତା, ଦନ୍ତାବଳ ବଡ଼ ବଳବନ୍ତ; ତାହାକୁ ଅରେ ଆଡ଼କରି ଆମ୍ଭର ଉପକାର କର; ଆମ୍ଭେମାନେ ଭିତରକୁ ଯିବୁଁ ।" ମାହୁନ୍ତ କର୍କଶ-ସ୍ୱରରେ କହିଲା,—"ସମସ୍ତେ ତୁମ୍ଭଙ୍କୁ ବଳବନ୍ତ କହୁଥାନ୍ତି, ପୁଣି ଏକା ପରି କେଶୀ.ଅଘାବକା ଆଦି ନାଶକଲ; ବର୍ତ୍ତମାନ ଏପରି କହୁଛ ଯେ ?" କୃଷ୍ଣ କହିଲେ,—"ହେ ହସ୍ତିପାଳକ, ବଡ଼ ଚତୁରସ୍ୱରରେ କଥାକହୁଛ; ଆମ୍ଭେମାନେ ଭୟାଳୁ ବ୍ରଜବାଳକ; ସଦାକାଳ ଦେଶରେ ଥାଉଁ; ଏବେ

ବିଦେଶକୁ ଆସିଛୁଁ; କରିକନ୍ଧରେ ଚଢ଼ିଛ ବୋଲି ଏତେ ବଡ଼ାଇ କରୁଛ ନା କଣ ?" ମାହୁନ୍ତ ଗର୍ଜିଉଠିଲା, 'ଦେଖୁଛୁ ଟିକିଏ ରହ ।' ଶ୍ରୀହରି କପଟରେ ଧୈର୍ଯ୍ୟ ବର୍ଜନ କଲାପ୍ରାୟହୋଇ ବଜ୍ରମୁଷ୍ଟିରେ ତର୍ଜନ କରି ଉତ୍ତର ଦେଲେ,—"ତୁ କ ଦେଖିବୁ ରେ ଗଜାସେବୀ ଗଜ-ମୂର୍ଖ-ଗଜ, ଶରୀରର ତୁଳନାରେ ଆଖି ଯେ ଅତଛୋଟ, ନାହିଁ କହିଲେ ଚଳେ; ହାତ ପାଇବାକୁ ଲମ୍ବହୋଇଥିଲେ ଏତେବେଳକୁ ଏଦାଢ଼ି ତୋର ଉଡ଼ନ୍ତାଣି ।" ଏକଥାଶୁଣି ମାହୁନ୍ତ କୋପରେ କମ୍ପମାନ ହୋଇ ଅଧର କାମୁଡ଼ି ଓ କରାଳନୟନ ବୁଲାଇ ଗଜ ଆଗଭର କଲା; ମାତଙ୍ଗ କ୍ରୋଧରେ ଦନ୍ତ ମାଇଲା, କିନ୍ତୁ କୁଣ୍ଡଳି-ପ୍ରବଳଘାତ-କାଳରେ ନକୁଳ ଯେପରି କରେ, ଅନନ୍ତ ସେହିପରି ବଚନ୍ଧ ଗତି କରି ନିଜକୁ ବଞ୍ଚାଇଲେ । ନରସିଂହ ସିଂହପ୍ରାୟ ପାଦ କ୍ଷେପ କରି ହସ୍ତୀର ପଶ୍ଚାତ୍କୁ ଗମନ କଲେ ଏବଂ କରିବରର ଲାଙ୍ଗୁଧରି ପଛକୁ ଓଟାରି ନେଲେ; ଶ୍ରୀହରି-ହସ୍ତରେ ହସ୍ତୀ ଗରୁଡ଼-ଚଞ୍ଚୁ-ଧୃତ ବିଷଧର ସର୍ପପ୍ରାୟ ମନେ-ହେଲା । ବାଳକମାନଙ୍କ କରରେ ବନ୍ଧନ ସୂତ୍ରରେ ଗୁଞ୍ଜରି ଯେପରି ଭ୍ରମେ, କରିବର କୁମାର-ହସ୍ତରେ ସେହିପରି କୁମ୍ଭକାର-ଚକ୍ର ପ୍ରାୟ ଘୂରିଲା । ଶ୍ରୀହରି ବୁଲାଇ ବୁଲାଇ ଏପରି ବେଗରେ ଛାଡ଼ିଦେଲେ ଯେ କୁବଳୟା ମୁହଁମାଡ଼ି କଚ୍ଛଡ଼ି ପଡ଼ିଲା ଏବଂ ଦନ୍ତାବଳ-ଦନ୍ତ ଉପୁଡ଼ିଗଲା । ଅନନ୍ତର ପର୍ବତରେ କୁଳିଶାଘାତକଲା ପ୍ରାୟ ଶ୍ରୀହରି ହସ୍ତୀ ଓ ହସ୍ତି-ପାଳକର ଶିରରେ କରିଦଶନ କଚାଡ଼ି ସେମାନଙ୍କୁ ନିଃଶେଷ କଲେ ଓ ମଥୁରା ଦାଣ୍ଡରେ ଜୟଯୁକ୍ତ ହୋଇ ଜୟ ପତାକା ଉଡ଼ାଇଲେ ।

ତତ୍ପରେ ନିର୍ଭୟ ଗୋବିନ୍ଦ ହସ୍ତରେ ଦଶନଧରି ଓ ଅଧରରେ ମନ୍ଦହାସ ଖେଳାଇ ରଙ୍ଗସ୍ଥଳରେ ପ୍ରବେଶକଲେ । ସେ କୋଟିଲାବଣ୍ୟମୟ ମୂର୍ତ୍ତି କୁଟିଳ, ନିର୍ଦ୍ଦୟ ଓ ସରଳ-ହୃଦୟ ଲୋକମାନଙ୍କ ଚକ୍ଷୁରେ ମନଅନୁରୂପେ ବିଭିନ୍ନରୂପ ଧାରଣ କଲେ । ଜଗଜ୍ଜେତା ଗୋପାଳ-ମାନଙ୍କ ନେତ୍ରରେ ନନ୍ଦନନ୍ଦନ, କାମିନୀମାନଙ୍କ ଚକ୍ଷୁରେ କାମ-କଳ୍ପତରୁ,

ଭକ୍ତ ସମକ୍ଷରେ ସ୍ୱବଗ୍ରାହୀ, ଯୋଗି-ନୟନରେ ଯୋଗେଶ୍ୱର, ବିଦ୍ୱାନ ସମୀପରେ ଗଣେଶ, ପଣ୍ଡିତ -ଦୃଷ୍ଟିରେ ବୃହସ୍ପତି ଓ ଧନବାନ୍ ନୟନରେ କୁବେର ବୋଲି ପ୍ରତୀତ ହେଉଲେ; ପୁଣି ତାହାଙ୍କଠାରେ କଂସ କାଳ-ଦେବତା ଓ ମଲ୍ଲମାନେ କୁଳିଶଦୃଢଦନ୍ତ ବଜ୍ରମୁଷ୍ଟି ମହାମଲ୍ଲ ସନ୍ଦର୍ଶନ କଲେ । ସଭା କ୍ଷଣକାଳ ନିସ୍ତବ୍ଧ ହେଲା ।

କେହି ସାଧାରଣ ନାଗରିକ ସଙ୍ଗୀମାନଙ୍କୁ କହିଲା,"ଏଠାରୁ ଚାଲିଯିବା ଚାଲ; ବାଳକବଧ କାହିଁକି ଦେଖିବା; ଯେଉଁଠାରେ କେହି ଧର୍ମର ଅପେକ୍ଷା ରଖେନାହିଁ, ସେପରି ଅଧର୍ମ ସଭା ଉପେକ୍ଷି ଚାଲିଯିବା ଏକାନ୍ତ ବାଞ୍ଛନୀୟ; ଜନକଜନନୀ କଷ୍ଟଦଶା ଭୋଗକରି ନତବଦନରେ ଯେ ଏମାନଙ୍କର ଇଷ୍ଟପାଇଁ ସ୍ୱୀୟ ଇଷ୍ଟଦେବତାଙ୍କୁ ଅହରହଃ ଚିନ୍ତା କରୁଅଛନ୍ତି ତାହାର କି ଆଜି ଏହିଫଳ ହେବ ?"

ଏହିକାଳରେ ଜଣେ ମଲ୍ଲ ବାହୁସ୍ଫୋଟ କରି କହିଲା,—"ହେ ହଲି, ହରି, ଆଜି କାହିଁଯିବ; ହାତୀଟାକୁ ମାରିଛ ବୋଲି କିଛି ବଡ କଥା କରିନାହିଁ; ଆସ ମୋ ସଙ୍ଗରେ ଦ୍ୱନ୍ଦ ସମର କର; ଆଜି ବାହୁଯୁଦ୍ଧରେ ତୁମ୍ଭମାନଙ୍କର ପ୍ରାଣ ବିନାଶ କରିବି ।" କୃଷ୍ଣ ବଜ୍ର କଣ୍ଠରେ କହିଲେ, "ଆରେ ମୂର୍ଖର, ଯମଠାକୁ ବାର୍ତ୍ତା ପଠାଇବାପାଇଁ ତୋତେହିଁ ଚୂର କରିବି ।" ଚାଣୁର କ୍ରୋଧଦୀପ୍ତ ହୋଇ କୃଷ୍ଣଙ୍କୁ ମୁଠେ ପ୍ରହାର କଲା, ମାତ୍ର ବ୍ରଜସିଂହ ତାହା ବ୍ୟର୍ଥକରି ତାହାର ପ୍ରତିଦାନ ଦେଲେ । ତେଣେ କାମପାଳଙ୍କ ସଙ୍ଗରେ ଅନ୍ୟ ଜଣେ ମଲ୍ଲର ବାହୁଯୁଦ୍ଧ ଆରମ୍ଭ ହେଲା । ମୁଷ୍ଟିକର ହସ୍ତରେ କୃପାଣ ତୋମର ଇତ୍ୟାଦି ଶସ୍ତ୍ରମାନ ଥିଲା ମାତ୍ର ହଳୀଙ୍କ କରରେ ନିଜ ଆୟୁଧ ଭିନ୍ନ ଅନ୍ୟ କିଛି ନଥିଲା । ରାମ-ହରିପରି ସିହାଣ ସଂସାରରେ ଆଉ କିଏ ଅଛି ? ସେମାନେ ମାଲ ବିଜ୍ଞାପଣ ଦେଖାଇ ମାଲମାନଙ୍କୁ ନିପାତ କରି ନିର୍ବାଣ ଦେଲେ

କଂସ ଏ ସମସ୍ତ ଦେଖି ମୁହଁ ଶୁଖାଇ ସିଂହାସନରେ କାତର ଭାବରେ କମ୍ପିବାକୁ ଲାଗିଲା ଏବଂ କ୍ଷଣକାଳ ପରେ ମହୀତଳରେ କଗୃଡ଼ି

ପଡ଼ ପ୍ରାଣ ଶୁଦ୍ଧ ଭବ ଭୟରୁ ନିଷ୍କୃତି ପାଇଲା । ଜଗଜ୍ଜ୍ୟୋତି ଅଗତିଗତି କୃପାସାଗର ନନ୍ଦସୂନୁ ଧାଇଁ ଯାଇ କଂସକୁ ଧରିଲେ । ଶ୍ରୀଅଙ୍ଗସ୍ପର୍ଶମାତ୍ରେ ତାହାର ଆତ୍ମା କୃଷ୍ଣପାଦପଦ୍ମରେ ଲୀନ ହେଲା । ଆବାଳବୃଦ୍ଧ-ଦର୍ଶକବୃନ୍ଦ ଶ୍ରୀକୃଷ୍ଣଙ୍କର 'ଜୟ' 'ଜୟ' ଉଚ୍ଚାରଣ କଲେ; ଲଳନାମାନେ କୁସୁମ ବର୍ଷଣ କଲେ ଏବଂ ବନ୍ଦୀଗଣ ସ୍ତୁତି ପାଠକଲେ ।

ରାଜଶକ୍ତି ଜନଶକ୍ତି ଉପରେ ନିତ୍ୟ ପ୍ରତିଷ୍ଠିତ; ରାଜା ଶାଖା—ପ୍ରଶାଖା-ପତ୍ର-ପୁଷ୍ପ-ଫଳ-ସମନ୍ୱିତ ବିଶାଳ ତରୁ, ଜନସଂଘ ଏହାର ପ୍ରକାଣ୍ଡ କାଣ୍ଡ ଓ ପ୍ରଧାନ ମୂଳ ଏବଂ ପ୍ରତ୍ୟେକ ବ୍ୟକ୍ତି ଏହାର କୈଶିକ ଚେର; ସୁତରାଂ ରାଜାରୂପୀ ପାଦପ ଜନସଂଘରୂପୀ ମୂଳ ଓ କାଣ୍ଡ ଉପରେ ଦଣ୍ଡାୟମାନ ହୋଇ ବ୍ୟକ୍ତିରୂପୀ ଚେରଦ୍ୱାରା ଆହାର୍ଯ୍ୟ ରସ ଗ୍ରହଣପୂର୍ବକ ବଳକାରକ ଖାଦ୍ୟରୂପେ ପୁଣି ସମସ୍ତ ଅଙ୍ଗକୁ ଦାନକରି ଓ ନବପତ୍ର-ରୂପ ଶୀତଳ ଛାୟାରେ ସମସ୍ତଙ୍କୁ ରକ୍ଷାକରି ଆମୂଳଚୂଳ ପରିପୁଷ୍ଟ ହୁଏ; ସର୍ବାଙ୍ଗ-ସୁନ୍ଦର ହୋଇ ସୁମନୋହର ଫଳ ପୁଷ୍ପରେ ବିମଣ୍ଡିତ ହୁଏ । ଏବଂ ଅସଂଖ୍ୟ ପ୍ରାଣିଙ୍କର ନାନା ବିଷୟରେ ଆଶ୍ରୟସ୍ଥଳ ହୋଇ ସ୍ୱୀୟ କର୍ତ୍ତବ୍ୟ ସାଧନ କରେ । ଅନ୍ୟ ପକ୍ଷରେ ରାଜଭକ୍ତିରୂପୀତନ୍ତୁ ଚେର-ଗୁଡ଼ିକୁ ପାଦପ ସଙ୍ଗରେ ଏପରି ଦୃଢ଼ ଭାବରେ ସଂଯୋଗ କରିଥାଏ ଯେ ପ୍ରବଳ ବାତ୍ୟାରେ ସୁଦ୍ଧା କ୍ଷୁଦ୍ରତମ ଚେରଟି ମଧ୍ୟ ପାଦପକୁ ସ୍ଥିର ରଖିବାପାଇଁ ମୃତ୍ତିକାକୁ ଭିଡ଼ି ଧରିଥାଏ । ମାତ୍ର ସ୍ୱାତନ୍ତ୍ର୍ୟଲିପ୍ସୁ ଯଥେଚ୍ଛାଚାରୀ ଲୋକ ଯେତେବେଳେ ବୃକ୍ଷକୁ କାଣ୍ଡରୁ ବିଚ୍ଛିନ୍ନ କରିବାପାଇଁ ମୂଳରେ କୁଠାରଘାତ କରେ. ତେତେବେଳେ ବୃକ୍ଷଟି ଅଳ୍ପକାଳ ମଧ୍ୟରେ ଝିମିକି ଝାଉଁଳିଯାଏ ଏବଂ ଗଣ୍ଡିରୁ ଅଲଗା ହୋଇ ଶେଷରେ ଚିରଦିନ ପାଇଁ ଶୁଷ୍କକାଷ୍ଠରେ ପରିଣତ ହୁଏ । ଏତେ ହୋଇ ସୁଦ୍ଧା ମୂଳ ଜୀବିତ ଥାଏ; ଉତ୍ତମ ପାଣି ପବନପାଇ ସେ ପୁଣି ନୂତନ ଅଙ୍କୁର ବାହାର କରି ଅତ୍ୟଳ୍ପ କାଳରେ ତାହାକୁ ନବତରୁରେ ପରିଣତ କରେ । କିନ୍ତୁ ଚିରକାଳବ୍ୟାପୀ କୁଠାର-ଘାତରେ ଗଣ୍ଡି ଓ ଚେର କି ଯାତନା ଭୋଗ ନକରେ ! ମାତ୍ର ରସ ବୃକ୍ଷକୁ

ଯାଇନପାରି ଚେରରେ ସଞ୍ଚିତ ହୁଏ ଏବଂ ବହୁଳ ଅଙ୍କୁର ରୂପରେ ମୂଳରୁ ବହିର୍ଗତ ହୁଏ । ଅନେକ ଅଙ୍କୁର ଘାତକ ପାଦରେ ଦଳିତ ହୁଏ, ବୃକ୍ଷ-ଛାୟାରେ ଅନେକ ନ ବଢ଼ିପାରି ମରିଯାଏ; କିନ୍ତୁ ଗୋଟିଏ କି ଯୋଡ଼ିଏ କିଛି ନ ମାନି ସମସ୍ତ ଯାତନା ସତ୍ତ୍ୱେ ବୃହତ୍ତର ବୃକ୍ଷର ଆକାର ଧାରଣ କରେ । ପୂର୍ବବୃକ୍ଷ ମୃତପ୍ରାୟ ହୋଇ ଥିବାରୁ ତାହା ଏହାର ଛାୟାରେ ସମ୍ପୂର୍ଣ୍ଣରୂପେ ଶୁଷ୍କ ହୁଏ । କଂସମୂର୍ଖ ସେହି ଘାତକ; ସେ ନିଜଶକ୍ତିର ମୂଳ କେଉଁଠାରେ ନ ବୁଝି ଜନଶକ୍ତିରେ କୁଠାରାଘାତ କଲା । ଯେଉଁ ବୃକ୍ଷ-ଶାଖାରେ ବସିଛି, ତାହାର ମୂଳରେ ମୂର୍ଖ ଆଘାତ କଲା । ସୁତରାଂ ଜନ-ଶକ୍ତି ଦଳିତ ହେଲେହେଁ, ଦଳନ ଓ ନିର୍ଯ୍ୟାତନଦ୍ୱାରା ପୁଷ୍ଟିଲାଭ କରି ଅବଶେଷରେ ଶକ୍ତି କଂସାରି-କୃଷ୍ଣର ମୂର୍ତ୍ତି ଧାରଣ କଲା; ଅଙ୍କୁରୋଦ୍ଗମ ଦିନରୁ ଅଙ୍କୁରକୁ ନାଶ କରିବା ପାଇଁ ସର୍ବଦା ଚେଷ୍ଟିତ ହେଲେ ସୁଦ୍ଧା ଜନଶକ୍ତିର ଅଙ୍କୁର ଅବିନାଶୀ; ସୁତରାଂ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ଦୂଷିତରାଜଶକ୍ତିର ବିଲୋପ ଓ ଆତତାୟୀ କଂସର ସଂହାର ନିମିତ୍ତ ରାଜ-ସଭାର ସମ୍ମୁଖରେ ଜନଶକ୍ତି ସର୍ବଶକ୍ତିମତୀ ହୋଇ ଦଣ୍ଡାୟମାନ ହେଲା; କଂସ ନିଜର କଳୁଷିତ ସ୍ୱେଚ୍ଛାଚାରିର ଶକ୍ତିସହ କ୍ଷଣକମଧ୍ୟରେ ସ୍ଥାନଚ୍ୟୁତ ହୋଇ ଆପେ (ବିଧିନିର୍ଦ୍ଦେଶମ) ପ୍ରଜାଶକ୍ତିର ପଥ ପରିଷ୍କୃତ ଓ ନିଷ୍କଣ୍ଟକ କରିଦେଲା । ଶ୍ରୀକୃଷ୍ଣ ଜୟୀ ହେଲେ; ଜନସଙ୍ଘ ଜୟୀ ହେଲା; ଯଥେଚ୍ଛାଚାରି ରାଜଶକ୍ତି ଲୋପ ପାଇଲା । ଶ୍ରୀକୃଷ୍ଣ କଂସର ଶତ୍ରୁ ନଥିଲେ, ସେ ତାହାର ଅତି ସ୍ନେହ ଓ ଶ୍ରଦ୍ଧାର ପାତ୍ର; ଏଣୁ ସେ ତାହାର ଶକ୍ତି ଓ ଦୁର୍ବୃତ୍ତିର ବିରୋଧରେ ଦଣ୍ଡାୟମାନ ହେଲେହେଁ ସେ ଭୂପତିତ ହେଲାବେଳେ ଶ୍ରୀହରି ମାତୁଳଙ୍କୁ ବଞ୍ଚାଇବାପାଇଁ ତାହା ସମୀପକୁ ଦଉଡ଼ିଗଲେ । କି ସ୍ନେହ ଶ୍ରୀହରିଙ୍କର ! କି ଲୌକିକମାୟା ଭଗବାନଙ୍କର !

ଅନନ୍ତର ଶ୍ରୀକୃଷ୍ଣ ଉଗ୍ରସେନଙ୍କୁ ରାଜା କରି ମଥୁରାବାସିଙ୍କର ଆନନ୍ଦ ବର୍ଦ୍ଧନ କଲେ ଏବଂ ଉଗ୍ରସେନଙ୍କୁ ନିମିତ୍ତମାତ୍ର କରି ଅତ୍ୟାଚାରିତ ଜନ-ଗଣଙ୍କର ମଙ୍ଗଳବିଧାନ କରିବାର ଭିତ୍ତି ସ୍ଥାପନ କଲେ ।

## ଊନତ୍ରିଂଶ ପରିଚ୍ଛେଦ ।



କରୁଣାନିଧି ଦେବତାଙ୍କ କାର୍ଯ୍ୟକରିସାରି ମାଈଙ୍କୁ ଏହିରୂପେ ପ୍ରବୋଧ ଦେଲେ;—"ମାଈ, କଅଣ କହିବି; ମୋର ଦୁର୍ଭାଗ୍ୟ; ମୋର କର୍ମ ମନ୍ଦ, ମାମୁଙ୍କ ସଙ୍ଗରେ ଭେଟ ହେବାକୁ ଯୋଗ କଲାନାହିଁ; ମାମୁ ମୋତେ କେତେ ସ୍ନେହ କରୁଥିଲେ ! ସେ କଥା ଭାଳି ହୃଦ ଦଗ୍ଧ ହେଉଛି, ମୋତେ ଛଡ଼ା ଆଉ କାହାର କି ଗଲା; ମାମୁଙ୍କୁ ଏ ଅକାଳଚଡ଼କ କାହିଁ ଥିଲା, ଏତେବେଳେ ସୁମରି ବୁକୁକଣ ହେଉଛି; ମନରେ କେତେକଥା ପାଞ୍ଚିଥିଲି, ସବୁ ବ୍ୟର୍ଥ ହେଲା; ମୋତେ କି ଅପୂର୍ବ ଆଦରକରି ସେ ମୋଠାକୁ ଖିର ପରେ ଖିର ଗୋପନରେ ପେଶୁଥିଲେ; ସେ କାଳଯାଏ ମୋର ଅପୂର୍ବ ଶୁଭ ଚିନ୍ତୁଥିଲେ, କିନ୍ତୁ ମୋ ଠାରୁ ସେ କୌଣସି ଲାଭ ପାଇଲେ ନାହିଁ । ସେ କଥା ତାଙ୍କ କର୍ମରେ ନାହିଁ କି ମୋର ସେ ଯଶ ହେବାର ନାହିଁ । କୌଶଳୀ କୃଷ୍ଣ ମାଈଙ୍କୁ ଏହିପରି ସାନ୍ତ୍ୱନା ଦେଇ ସେଠାରୁ ପ୍ରସ୍ଥାନ କଲେ ଏବଂ ଜନକଜନନୀଙ୍କର କାରାଶୃଙ୍ଖଳ ମୋଚନ କଲେ ।"

ତତ୍ପରେ ଆନନ୍ଦକନ୍ଦ ପରମାନନ୍ଦ ନନ୍ଦଙ୍କୁ ବୋଧକରି କହିଲେ "ମାତାଙ୍କୁ ମୋର ଦଣ୍ଡପ୍ରଣାମ କହିବେ; ମୋର ନାମ ଏକା ସଦାସର୍ବଦା ଚିନ୍ତା କରୁଥିବେ; ମୁଁ ଏଠାରେ କିଛିଦିନ ରହି ପଛ ହୋଇ ଯିବି ।" ଅନନ୍ତର ସୁଦାମ ସୁବଳାଦି ସଖାମାନଙ୍କୁ କୋଳକରି କୋମଳସ୍ୱରରେ କହିଲେ,—"ତୁମ୍ଭେମାନେ ଗୋପକୁ ଯାଅ, ମୋର କଦମ୍ବମୂଳ ଓ କ୍ରୀଡ଼ାକୁଞ୍ଜ ଯତ୍ନରେ ରଖିଥିବ; କମଳୀ, ଧବଳୀ, ହଂସୀ, ବଂଶୀପ୍ରିୟା ପ୍ରଭୃତି ଗାଇମାନଙ୍କୁ କଦାପି ଅଯତ୍ନ କରିବ ନାହିଁଟି ।" ସଖାମାନେ ସଖେଦ ଉକ୍ତିରେ କହିଲେ, "ଯଦୁତୋଳା, ସବୁ ଗଲା! ଏକାବେଳକେ କାଟି ଦେଲେ ସିନା; ବିଧାତା କି ହଠ କରୁଛି ଯେ ଆମ୍ଭମାନଙ୍କର ପ୍ରାଣ ନଯାଇ ରହିଛି ।" କେଶବ କହିଲେ "କିଛି ଚିନ୍ତା କର ନାହିଁ, ତୁମ୍ଭମାନଙ୍କୁ କଦାପି

ଅନ୍ତର କରିବ ନାହିଁ, ରାଜଧାନୀ ସ୍ଥାୟୀ କରିଦେଇ ଅବଶ୍ୟ ଯିବ, ଧୈର୍ଯ୍ୟ ଧରି ସଦା ପ୍ରସନ୍ନଚିତ୍ତ ହୋଇ କର୍ତ୍ତବ୍ୟ କର୍ମ କରିବ ।" କୃଷ୍ଣ ବୋଲରେ ବ୍ରଜବଂଶ ପ୍ରବୋଧିତ ହୋଇ ଗୋପକୁ ଗମନ କଲେ । ଶ୍ରୀକୃଷ୍ଣ କାମପାଳ ସହିତ ମଧୁପୁରରେ ରହିଲେ । ସନ୍ଥପାଳନ ଓ ଦୁଷ୍ଟଦଳନ ଯାହାଙ୍କ ଉଦ୍ଦେଶ୍ୟ, ଧର୍ମସଂସ୍ଥାପନ ଯାହାଙ୍କର ଅଭିଳାଷ, ଭକ୍ତି ଓ ପ୍ରେମର ପଥ ଦର୍ଶାଇବା ଯାହାଙ୍କର ଲକ୍ଷ୍ୟ, ଏବଂ କର୍ମ-ଜ୍ଞାନଭକ୍ତି ଶିକ୍ଷା ଦେବାପାଇଁ ଯାହାଙ୍କର ଆବିର୍ଭାବ, ସେହି ନରଦେବତା ପୁରୁଷୋତ୍ତମ ନିଷ୍କାମ କର୍ମ, ବିଶୁଦ୍ଧଜ୍ଞାନ ଓ ବିମଳ ଭକ୍ତି ଦ୍ୱାରା ରାଜଧାନୀର କୁଟିଳ ରାଜନୀତି କ୍ଷେତ୍ରରେ ନିଜର ଦିବ୍ୟଆଦର୍ଶ-ବୀଜ ରୋପଣ କରିବାପାଇଁ ମଥୁରାରେ କିଛିକାଳ ଯାପନ କଲେ ।

ତଦନନ୍ତର ଶ୍ରୀହରି ଦିନେ ପୂର୍ବ ଅଙ୍ଗୀକାର ସ୍ମରଣକରି ବାସକ-ସଜ୍ଜା କୁବୁଜାର ପୁରକୁ ବିଜୟ କରିବାପାଇଁ ଉଦ୍ଧବସହ ପ୍ରସ୍ଥାନ କଲେ । ପୁରରେ ପ୍ରବେଶ କରି ଦେଖିଲେ,'ପୁରୀ କୁବେରପୁରୀ କିମ୍ବା ଅଳକାପୁରୀକୁ ଶୋଭାରେ ଜିଣିଅଛି । ମନ୍ଦିର ନାନାପ୍ରକାରରେ ମଣ୍ଡିତ ହୋଇଅଛି; ଚନ୍ଦ୍ରାତପ, ପାଟପଡ଼ନୀ ଓ ଫୁଲଗୁମ୍ଫରାଜି ଶୋଭନ ବାସ କମନୀୟ ହୋଇଅଛି । କାନ୍ଥମାନଙ୍କରେ ନାନା ଚିତ୍ରପ୍ରତିମା ଜୀବନ୍ତନାରୀ ସମ କଥା ନ କହି ହସିଲପରି ବୋଧ ହେଉଅଛି । ବିଜେ ଖାଟମାନ ରଙ୍ଗପାଟରେ ପାଏଡ଼ା କସି ହୋଇ ତାହା ଉପରେ କର୍ପୂରଚନ୍ଦନର ଛଗି ପକା ହୋଇଅଛି । କରିଦନ୍ତ ପଲଙ୍କରେ ହିଙ୍ଗୁଳା-ତୁଳୀ ପାତିତ ହୋଇ ତଦୁପରି କେଶରଯୁକ୍ତ ମନୋହର ମୂଚୁଳି ଛାଦିତ ହୋଇଅଛି । ଶଯ୍ୟା ଉପରେ କୁସୁମପାଖୁଡ଼ା ବିଛା ହୋଇ ପାଖୁଡ଼ା ଉପରେ ଝଲ୍ଲ ପରା ହୋଇଅଛି । ଯାହାଙ୍କର ଅଙ୍ଗଲାଗି ହୋଇ କୁବ୍ଜକଳଙ୍କ ଲୋପ ପାଇଅଛି, ସେ କଳଙ୍କଭଞ୍ଜନ ଶ୍ରୀକୃଷ୍ଣଙ୍କ ଶ୍ରୀଅଙ୍ଗରେ ବୋଳିବାପାଇଁ କୁବୁଜା ପ୍ରେମପୂର୍ଣ୍ଣ ହୃଦୟରେ ଚତୁଃସମ-ଲେପନ-ଦ୍ରବ୍ୟ ସ୍ୱହସ୍ତରେ ସଜାଡ଼ି ରଖିଅଛି । କୁବୁଜା କି ତପ କରିଥିଲା, ସେ ପୁଣି କୋଟି ବ୍ରହ୍ମାଣ୍ଡନାଥଙ୍କୁ ନିଜ ପୁରକୁ ନେଲା । ଭଗ-ବାନଙ୍କର ପ୍ରବେଶ ମାତ୍ରେ କୁବୁଜା ରୋମାଞ୍ଚିତଗାତ୍ରରେ ଓ ପ୍ରଫୁଲ୍ଲମନରେ

ଦଣ୍ଡପ୍ରଣାମ କଲା; କଣ୍ଠ ବାଷ୍ପଗଦ୍‌ଗଦ ହେବାରୁ ମୁଖରୁ କଥା ବାହାରିଲା ନାହିଁ; ଦୁଇ ନୟନରୁ ଦୁଇଧାର ଅଶ୍ରୁ ଅନର୍ଗଳ ଗଳିବାକୁ ଲାଗିଲା; ଭଗବାନଙ୍କର ଦର୍ଶନରେ ସାତ୍ତ୍ୱିକ ପ୍ରେମ ଧୃତିବନ୍ଧ ଭାଙ୍ଗି ହୃଦୟକୁ ଦ୍ରବୀଭୂତ କରି କୁବୁଜାକୁ ଅଥୟ କଲା । କୁବୁଜା ନିଜ ପ୍ରାଣରେ ପରମ ଚରମ ସୁଖର ଆସ୍ୱାଦ ପାଇଲା । ବ୍ରହ୍ମା ଯେଉଁ ପାଦ-ପଦ୍ମକୁ ଧୋଇ ନିଜକୁ ଧନ୍ୟ ମନେ କରିଥିଲେ; ଶିବ ଯେଉଁ ପାଦଧୌତ ଜଳକୁ ଶିରରେ ରଖି ଆପଣାକୁ କୃତାର୍ଥ ମନେ କରନ୍ତି, ଯେଉଁ ଜଳ ତ୍ରୈଲୋକ୍ୟ-ପାବନ ଗୁଣରେ ସଗର-ପୁତ୍ରଙ୍କୁ ପବିତ୍ର କଲା, କୁବୁଜା ସେହି ପାଦ ପଦ୍ମକୁ ସ୍ୱହସ୍ତରେ ପଖାଳି ଅତି ଆଗ୍ରହରେ ସେ ଜଳକୁ ସେବା କଲା । ତତ୍ପରେ କୋମଳ ସୂକ୍ଷ୍ମ ବସନରେ ପାଦ ପୋଛି ଦେଇ ଶ୍ରୀହରିଙ୍କୁ ପଲ୍ୟଙ୍କରେ ବିଜୟ କରାଇଲା । କେତେ ଜନ୍ମର କେତେ ସୁକୃତିରୁ ଶ୍ରୀକୃଷ୍ଣ ପ୍ରସନ୍ନ ହେଲେ । ଉଦ୍ଧବ ମେଲାଣି ମାଗି ପ୍ରସ୍ଥାନ କଲେ । କାମି-କଳ୍ପତରୁ ମହିମା-ମେରୁ ଦୀନବନ୍ଧୁ ଭାବଗ୍ରାହୀ କୁବୁଜା ଭାବରେ ଆବଦ୍ଧ ହୋଇ ତାହାର ପ୍ରୀତି ସମ୍ପାଦନାର୍ଥ ତାହା ପୁରରେ କିଛୁଦିନ ଅବସ୍ଥାନ କଲେ ।

କିନ୍ତୁ ଗୋପୀନାଥ ଗୋପୀଙ୍କ କଥା, କୁଞ୍ଜକାନନର ବିନୋଦ କ୍ରୀଡ଼ା, କାଳିନ୍ଦୀକୂଳ ଓ କଦମ୍ବମୂଳର ବିହାର, ଏବଂ ରାସ କେଳି ଇତ୍ୟାଦି ସ୍ମରଣ କରି ଦିନୁଁ ଦିନ ସନ୍ତପ୍ତ ହେଲେ । "ପ୍ରେମରସାତୁଳୀ ଶ୍ରୀରାଧା ବାତୁଳୀ" ଙ୍କର ଗୁଣ ଗାଥା ମନରେ ପଡ଼ି ମାଧବଙ୍କୁ ବ୍ୟଥିତ ଓ ବ୍ୟାକୁଳ କଲା ।

ଯେ ଦୁଃଖୀ ସେହି ସିନା ତାହାର ଦୁଃଖ ଜାଣେ; ଅନ୍ୟ କେହି ତାହା ଅନୁଭବ କରିପାରେ କି ? କିବା ତାହା କଳ୍ପନା ବଳରେ କଳନା କରିପାରେ କି ? ତଥାପି ପ୍ରତିକାର ନଥିଲେ, ସମସ୍ତ ପ୍ରକାର ଦୁଃଖ, ଯେତେ ଗୁରୁ ହେଲେହେଁ, ସହିହୁଏ, ମାତ୍ର ବିରହବେଦନା ଅସହ୍ୟ ଦୁଃଖ । ଅମିତ ସହିଷ୍ଣୁତା ବ୍ୟତୀତ ତାହା ସହ୍ୟ କରିବା ଅସମ୍ଭବ । ଅତଏବ ହେ ରସିକରାଜ ! ଯେଣୁ ଏ ସଂସାରରେ ଆପଣଙ୍କପରି ସହିଷ୍ଣୁ କୋଟି-କରେ ଗୋଟିଏ ନାହିଁ, ତେଣୁ ପ୍ରାଣ ପଛେ ଯାଉ ବିରହ ବେଦନା କାହାରିକୁ ନ ହେଉ ।

## ତ୍ରିଂଶ ପରିଚ୍ଛେଦ ।



ଭକ୍ତ-ବିରହରେ ଭଗବାନଙ୍କର ଯେଉଁ ଗମ୍ଭୀର ବେଦନା ଜାତ ହୁଏ, ତାହା ଭାଷାତୀତ; ଭଗବାନଙ୍କର ପ୍ରେମ ସମୁଦ୍ରଠାରୁ ଗମ୍ଭୀର ଓ ପ୍ରଶାନ୍ତ, ତପନଠାରୁ ଉଜ୍ଜ୍ୱଳ ଓ ଉଦାର, ଏବଂ ସଦ୍ୟ-ପ୍ରସ୍ଫୁଟିତପୁଷ୍ପଠାରୁ ସ୍ନିଗ୍ଧ ଓ ନିର୍ମଳ । ମାନବର ଭାଷା-ଭାବରୂପ ପରିମାପକ ସେ ଈଶ୍ୱର-ପ୍ରେମକୁ ମାପିବାପାଇଁ ସର୍ବଦା ଅନୁପଯୁକ୍ତ ଓ ଅପର୍ଯ୍ୟାପ୍ତ । ତଥାପି ତାହାର ଯେଉଁ ମାପ କାଠିଟି ସବୁଠାରୁ ବଡ, ସେଥିରେ ଈଶ୍ୱର ପ୍ରେମକୁ ମାପିବାକୁ ସେ ତ୍ରୁଟି କରେ ନାହିଁ; ଏପରି କରିବାରେ ସେ ଦୋଷୀ ନୁହେଁ, ବରଂ ଅନାଦି ଅନନ୍ତଙ୍କୁ ନିଜର କ୍ଷୁଦ୍ରତ୍ୱ ଓ ସସୀମତ୍ୱ ଦର୍ଶାଇ, ତଜ୍ଜନିତ ତ୍ରୁଟି ମାର୍ଜନା ନିମିତ୍ତ ତାହାଙ୍କଠାରେ ସରଳ ପ୍ରାଣରେ ପ୍ରାର୍ଥନା କରିବାପାଇଁ ଅବସର ପାଏ । ସଂସାରରେ ପ୍ରିୟ ଓ ପ୍ରିୟା ମଧ୍ୟରେ ଯେଉଁ ଆବିଳ ପ୍ରେମ ଟିକକ ଅଛି, ତାହାହିଁ ତାହାର ସର୍ବୋତ୍କୃଷ୍ଟ ପ୍ରେମଧନ; ସେମାନଙ୍କର ବ୍ୟାକୁଳତା ପୂର୍ଣ୍ଣ ଭାଷାରେ ମାନବ ଭଗବାନଙ୍କର ପ୍ରେମକୁ ପ୍ରକାଶ କରିବାପାଇଁ ପ୍ରୟାସ କରିଥାଏ; ଚେଷ୍ଟା ସମ୍ପୂର୍ଣ୍ଣ ଫଳବତୀ ନ ହେଲେହେଁ ମାନବ ତାହାର କର୍ତ୍ତବ୍ୟ କରେ ଏବଂ ସଂସାରରେ ମହାନଆଦର୍ଶ ରଖିଯାଏ । ଶ୍ରୀକୃଷ୍ଣ ମାନବ ଦେହରେ ମାନବଲୀଳା କରୁଥିଲେ; ତାଙ୍କର ଅପାର୍ଥିବ ପ୍ରେମ ଚିନ୍ତାତୀତ ଓ ବଚନାତୀତ ହେଲେସୁଦ୍ଧା, ଲୀଳାମୟ ପ୍ରେମିକା-ପ୍ରେମିକର ଭାଷାରେ ନିଜର ଭକ୍ତପ୍ରତି ଯେଉଁ ଉତ୍କଣ୍ଠା ତାହା ଚିନ୍ତାକରି ଲୋକ ଶିକ୍ଷାର୍ଥ ଆଦର୍ଶ ସ୍ଥାପନ କଲେ, ଏବଂ କବି ସେହି ଭାଷାରେ ତାହା ବର୍ଣ୍ଣନା କରି ଈଶ-ପ୍ରେମାମୃତ ନିଜେ ପାନକଲେ ଏବଂ ଜଗତକୁ ଦାନକଲେ ।

ରାଧାକାନ୍ତ କଂସ କଣ୍ଟକରେ ଥାଇ କାନ୍ତାକଥା 'ଚିନ୍ତେଇ' ଏହିପରି ଚିନ୍ତାକଲେ;—"ଆହା, କୁନ୍ଦଦଶନା କମନୀୟ-ବନ୍ଧୁଳୀ-ବିମ୍ବ-ଦନ୍ତ-ବସନା

ଶ୍ରୀରାଧା ମୋ ସଙ୍ଗ ବିନା ବିମନା ହୋଇ କିପରି ବଞ୍ଚୁଥିବ; ବିଧି ମୋତେ ଓ ତାକୁ କି କଲା ! କପାଳରେ କଣ ଏହି ଦଶା ଥିଲା ! କନକ-ଗୋରୀ କିଶୋରୀ କେବେ କଷ୍ଟ ଅନୁଭବ କରିନାହିଁ, ତାକୁ ଛାଡ଼ି ଯା ମୁଁ ପ୍ରବାସ କରି ଅଇଲି ! ମୋର ପ୍ରାଣକୁ ଧିକ୍; କାଳ କଣ ନ କରେ ! ଦେହ କ'ଣ ନ ହେଉଛି ! କୁଟିଳକେଶୀ ଗଣ୍ଡମଣ୍ଡଳରେ କରକମଳ ଦେଇ ବସି କଣ ବିସ୍ମରୁଥିବ ! ଓହୋ ବିରହାନଳରେ ଝାସିହେବାପାଇଁ କର୍ମରେ ଥିଲା ! ମୁଁ ଯେତେବେଳେ ଆସୁଛି, ସେ ମୋର କର ଧରି କହିଲା, 'ହେ ଅଭିନ୍ନବନ୍ଧୁ, ମୋତେ କିପରି ଭିନ୍ନ କରୁଛନ୍ତି ?' ସୁମୁଖୀଗୁଣ କଠିନ ହୃଦୟରେ ଗୁଣି ପାପିଷ୍ଠ ପ୍ରାଣ କାହିଁକି ବାହାରି ଯାଉନାହିଁ ? କୃଶଦଶାପାଇ ସେ ବିରହବ୍ୟାଧକରରେ କ୍ରୀଡ଼ାକୁରଙ୍ଗୀ ହୋଇଥିବ; ଯେଉଁ ବଦନ କଳାନିଧିକୁ ହସେ, ସେ ଏବେ ଲୋତକଜଳରେ ମଳିନ ହୋଇଥିବ । ଗର୍ଭକ ବିନା କେଶ ଆଲୁଳାୟିତ ହୋଇ ଚରମ ଦେଶରେ ପଡ଼ିଥିବ; ସେଥିରେ କି ଆଉ କୁସୁମ ବାସିଥିବ; କେତେ-ବେଳେ ତାକୁ ନିକ୍ଷସଦନ ରୁଚୁ ନ ଥିବ ।"

ଭକ୍ତ-ଭଗବାନ ଯଦି ଭିନ୍ନ ନୁହନ୍ତେ ତେବେ ଭକ୍ତ କାହିଁକି ଧନଶ୍ରୀବିହୀନ ଭିକାରିହସ୍ତା ହୁଅନ୍ତା, କଠିନ ଯୋଗାସନରେ ବସନ୍ତା, ଅନଳ, ଅନିଳ ଓ ଜଳ ମଧ୍ୟରେ ପଶନ୍ତା ଏବଂ ଦୁଃଖସାଗରରେ ଭାସନ୍ତା; ଦର୍ଶନ-ସ୍ପର୍ଶନ-ଶ୍ରବଣାଦି ଇନ୍ଦ୍ରିୟମାନଙ୍କର ଗରିମା କେଉଁଠାରେ ଥାନ୍ତା ଯେ ସେମାନଙ୍କର ନିଗ୍ରହ ଆବଶ୍ୟକ ହୁଅନ୍ତା । ଭକ୍ତ ଭଗବାନଙ୍କ କୋଳରେ ଯଦି ସର୍ବଦା ଆଶ୍ରୟ ପାଆନ୍ତା, ତେବେ କେଉଁଥିର ତାହାର ବିଷାଦ-କାରଣ ହୁଅନ୍ତା; ପରନ୍ତୁ ତେତେବେଳେ ଈଶ୍ୱର ଇଚ୍ଛାରେ ବିଷ ମଧ୍ୟ ଅମୃତ ପାଲଟି ଯାଆନ୍ତା । କିନ୍ତୁ ବିଚିତ୍ରକର୍ମା ବିଧାତା ସେମାନଙ୍କୁ ଏକାଠି କରି ଦେବାକୁ ଏକାନ୍ତ ଅନିଚ୍ଛୁକ । ଯେତେବେଳେ ଭକ୍ତ ନିଜର ଭକ୍ତି-ବଳରେ ଭଗବାନଙ୍କର ସମ୍ମୁଖୀନ-ହୁଏ, ସେତେବେଳେ ଶ୍ରୀ, କୀର୍ତ୍ତି, ଶୋଭା, ଲକ୍ଷ୍ମୀ, ଶକ୍ତି, ଧୀ, ପ୍ରଜ୍ଞା ଓ

ସର୍ବଦର୍ଶନାଦି ଗୁଣନିଚୟ ଭକ୍ତର ପଛରେ ଗୋଡ଼ାଇ କଣାଲୋକ ପରି ତାହାର ଅନୁଗତ ହୁଅନ୍ତି; ସେ କାଳରେ ତ କେହି ନିଜର ବଡ଼ାଇ ଦେଖାଇ ଦୂରଗତ ହୁଏନାହିଁ ।

ଭକ୍ତର ଦର୍ଶନରେ ଭଗବାନଙ୍କର ସର୍ବ ପ୍ରକାରରେ ଧୈର୍ଯ୍ୟଚ୍ୟୁତ ଘଟେ । ସେ କାଳରେ ଭକ୍ତର ଭାବସ୍ମୃତି, କଟାକ୍ଷଭଙ୍ଗୀ, ମନ୍ଦମଧୁରହାସ ଓ ବଙ୍କ ବଚନ ଭଗବାନଙ୍କର ଅକଥନୀୟ ସୁଖ ସମ୍ପାଦନ କରେ । ସେ ବେଳର କୌତୁକ କଥାରେ ସ୍ନେହସୁଧା ସୁବର୍ଣ୍ଣରେ ସୁଗନ୍ଧ ଯୋଖିଲାପରି ହୁଏ । ଭଗବାନ କୃତାର୍ଥହୋଇ ଯେତେବେଳେ ଭକ୍ତକୁ କୋଳରେ ଘେନି ଆଲିଙ୍ଗନ କରନ୍ତି, ସେତେବେଳେ ଭକ୍ତ ଅସ୍ମିତା ଭୁଲିଯାଇ ସମସ୍ତ ବନ୍ଧନ ଛୁଡ଼ାଇ ଲୀଳାମୟଙ୍କର ଲୀଳାରେ ଅନୁରାଗୀ ଓ ଲୀଳା-ଭାଗୀହୁଏ; ଆହ୍ଲାଦରେ ବିଭୋଳହୋଇ ଆନନ୍ଦାଶ୍ରୁ ବର୍ଷଣକରେ, ଏବଂ ପ୍ରେମରେ ଉନ୍ମତ୍ତହୋଇ ଭଗବାନଙ୍କୁ ଗାଢ଼ ଭାବରେ ପୁନଃ ପୁନଃ ଆଲିଙ୍ଗନ କରେ । କେତେବେଳେ ସାଗର ଊର୍ମିରେ, ପର୍ବତ ଶୃଙ୍ଗରେ, ନଭନୀଳିମାରେ, ଧରାର ହରିତକାନ୍ତିରେ, ମାରୁତଗତିରେ ଚପଳା-ଜ୍ୟୋତିରେ, ସମର କ୍ଷେତ୍ରରେ ଓ ଘାତୁକ-ଘାତରେ ସର୍ବତ୍ର ସର୍ବଦା ରସମୟଙ୍କର ପ୍ରେମଲୀଳା ସନ୍ଦର୍ଶନକରି ତହିଁରେ ଯୋଗ ଦେବାପାଇଁ ସେମାନଙ୍କୁ ଆଲିଙ୍ଗନ କରିବା ନିମିତ୍ତ ଊର୍ଦ୍ଧ୍ୱଶ୍ୱାସରେ ଶରଖର ଗତିରେ ଭକ୍ତ ଧାବମାନହୁଏ । ତେଣେ ଭଗବାନ ମଧ୍ୟ ଭକ୍ତ ବିରହରେ କ୍ଷଣକ କୋଟିଯୁଗ ମଣନ୍ତି; ଭକ୍ତ-ସମ୍ବଳହୀନ ହୋଇ ସମସ୍ତ ଐଶ୍ୱର୍ଯ୍ୟ ଓ ଗୌରବ ତୁଚ୍ଛ ମନେକରନ୍ତି; ଭକ୍ତର କୀର୍ତ୍ତନ ଶୁଣି ନପାରି ଶ୍ରୁତି ନିରର୍ଥକ ହୁଏ । ଯେ ବୈକୁଣ୍ଠରେ ନରହି ଯୋଗୀର ଯୋଗରେ ଜ୍ଞାନୀର ଜ୍ଞାନରେ ଓ କର୍ମୀର କର୍ମରେ ସହଜରେ ଦେଖା ନଦେଇ ଧନଦରିଦ୍ର ଭକ୍ତ ପାଶରେ ନିତ୍ୟ ବିରାଜମାନ ଥାନ୍ତି, ସେ ଭକ୍ତପଞ୍ଜର ଭଗବାନ ଭକ୍ତ ବିନା ନିଜକୁ ଶୂନ୍ୟପଞ୍ଜର ଦେଖନ୍ତି ।

ରାଧାବିନା ମାଧବ ଝୁରିବାକୁ ଲାଗିଲେ; ଭକ୍ତ ବିନା ଭଗବାନ ସର୍ବ-ଶୂନ୍ୟ ଦେଖିଲେ । ଶ୍ରୀରାଧାଙ୍କର ଲାବଣ୍ୟଠାଣି, କୋକିଳବାଣୀ, ଭକ୍ତିର-

ସାଳଚନ୍ଦ୍ର, କୃଷ୍ଣମନ୍ତ୍ରସ୍ତବ, କୃଷ୍ଣପ୍ରୀତରେ କର୍ମ, କୃଷ୍ଣ ସେବାରେ ଧର୍ମ, କୃଷ୍ଣ କଥାରେ ମୋହ, ଓ ଶୟନ ଜାଗରଣରେ କୃଷ୍ଣମନନାଦ ଗୁଣମାନ ଶ୍ରୀକୃଷ୍ଣଙ୍କର ମନକୁ ଓତ-ପ୍ରୋତ ଆଲୋଡ଼ନ କଲା । ଗୁଣ-ସ୍ମରଣ କ୍ରମେ ଅସହ୍ୟ ହେବାରୁ ନେତ୍ରରୁ ଲୋତକ ଅହର୍ନିଶ ଝରିଲା । ସୀତାବିରହରେ ସୀତାନାଥଙ୍କ ପରି ରାଧା ବିରହରେ ରାଧାନାଥ ଯେଉଁ ବେଦନା ଅନ୍ତରରେ ଅନୁଭବ କଲେ, ତାହା କିଏ କହିପାରେ, ବା ସେପରି ବେଦନା କିଏ ସହିପାରେ ? ତଥାପି ସେମାନଙ୍କର କର୍ମ ପୁରାତନ ନ ହୋଇ ନିତ୍ୟନବ ଚିରନୂତନ ଆଦର୍ଶରୂପେ ମାନବ ପ୍ରାଣରେ ଏପର୍ଯ୍ୟନ୍ତ ସମଭାବରେ କାର୍ଯ୍ୟକରି ଆସୁଅଛି ଓ ଚିରକାଳ କରୁଥିବ ।



## ଏକତ୍ରିଂଶ ପରିଚ୍ଛେଦ ।



ରାଧାବିରହରେ ଅତିଶୟ ବାଧାପାଇ ଶ୍ରୀକୃଷ୍ଣଙ୍କର ଶରୀର କୃଷ୍ଣପକ୍ଷର କଳାକରକଳା ପ୍ରାୟ ଦିନକୁଦିନ କୃଶତା ଭଜିଲା । ସେ ଶୁକପରି ରାଧା-ନାମ ଦିବାରାତ୍ର ଉଚ୍ଚାରଣ କରିବାକୁ ଲାଗିଲେ; ସଦନ କାରାସମ ମଣିଲେ; କେଳି-କୌତୁକ-କଥାମାନ ଏକାବେଳକେ ତ୍ୟାଗ କଲେ; ପ୍ରବଳ ବିରହାନଳରେ ମଳୟାନିଳ ଶୀତୋପଚାର କରିବାରୁ, ଶାମୁକାକୁ ପୋଡ଼ି ସେଥିରେ ଜଳଦେଲେ ଯେପରିହୁଏ, ସେହିପରି ଅଧିକତର ଉତ୍ତାପ ଜାତ ହେଲା । ଶ୍ରୀହରି ‘ ରାଧା ଉଦ୍ଧାର କର ’ ‘ ରାଧା ଉଦ୍ଧାର କର ’ କହି ସେ ଦୁଃସହ ଦୁଃଖ ସହୁଥିଲେ । ଫଣିମଣି ବୋଲି ମାନସରେ ମଣି ସେ କମନୀୟ କୁସୁମମାଳ ଆଉ ଗଳାରେ ଦେଲେ ନାହିଁ; ଜଳକଣ୍ଠ-କଣ୍ଠକୁ କୁଳିଶଘାତ ଭଳି କର୍ଣ୍ଣରେ ହସ୍ତ ଦେଉଥିଲେ, କୋକିଳକୁହୁ ଆବାସପାଶରେ ଶୁଣି ସୁଧାବାଣୀ ମଣି ଚମକି ଉଠୁଥିଲେ । କଞ୍ଜନେତ୍ର କେତେବେଳେ ଚନ୍ଦ୍ରାରେ

କାତର ହେଉଥିଲେ. କେତେବେଳେ ପୂର୍ବସଙ୍ଗ ସ୍ମରଣ କରି ରାଧାଗୁଣ କୀର୍ତ୍ତନ କରୁଥିଲେ, କେବେ ନିଜକୁ ରାଧାପାଶରେ ଥିବାର ମନେକରୁଥିଲେ, ଏବଂ କେବେ ବା ଭ୍ରାନ୍ତଚିତ୍ତ ହୋଇ ଉର୍ଦ୍ଧ୍ୱକୁ ଅନାଇ ରହୁଥିଲେ; ବିନୋଦିନୀ ପାଇଁ ବିନୋଦ ଅବିରତ ବିଳାପ କରୁଥିଲେ । ବିରହୀ କେବଳ ବିରହଦୁଃଖ ବୁଝେ, ଯାହାର କେବେ ବିରହ ହୋଇନାହିଁ, ସେ ଅନ୍ୟ କିପରି ବିରହବେଦନା ବୁଝିବ ? ପୁଣି ଯାହାର ବିରହକାଳ ପାର-ହୋଇଅଛି, ଯାହାର କଷ୍ଟବେଳ ଅତୀତ ହୋଇଅଛି, ସେକି କେବେ ଦୁଃଖିଦୁଃଖ ସମ୍ପୂର୍ଣ୍ଣ ଅନୁଭବ କରିପାରେ ?

ଶ୍ରୀହରି କୁଣ୍ଡଳୀପରି ଖରନିଃଶ୍ୱାସ ପକାଇ ସ୍ଥିରଜୀବନ ସ୍ତବ୍ଧତା-ପାଇଁ ବିସ୍ମର କରି ଶ୍ରୀରାଧା କଥା ଏହିପରି ଗୁଣି ହେଲେ;—"ଶ୍ରୀରାଧା ମୋତେ ଋତୁକେ କେତେସୁଖ ଦେଉ ନଥିଲା ! ତାହାର ସଙ୍ଗରେ ମୁଁ ନିଶିଦିନ କିଛି ଜାଣିପାରୁ ନଥିଲି; ଏବେ କ୍ଷଣକର ମହିମା କହିଲେ ନସରେ । ଶୀତକାଳରେ ତାହାର ଶ୍ରୀଅଙ୍ଗ ଗ୍ରୀଷ୍ମଋତୁପ୍ରାୟ ଉଷ୍ମ ହୋଇ କର୍ପୂରଧୂପପୂରିକୁ ଶୀତବାଧା ଦୂରକରେ; ଶ୍ରୀରାଧା ସାକ୍ଷାତ୍ ବସନ୍ତ ରୂପିଣୀ; ବଚନ ତାର କୋକିଳବାଣୀ, ମୁଖ ପୂର୍ଣ୍ଣଚନ୍ଦ୍ର ଓ ଶ୍ୱାସ ମଳୟବାତ । ଗ୍ରୀଷ୍ମକାଳରେ ତାହାର ଶ୍ରୀଅଙ୍ଗ ମୁକ୍ତାମାଳ ଓ ଚନ୍ଦ୍ରଚନ୍ଦନକୁ ବଳି ହିମଋତୁପ୍ରାୟ ଶୀତଳହୁଏ । ବର୍ଷାକାଳଚରିତ ତ କହିଲେ ବହୁତ ହେବ; ସେ ଶ୍ରାବଣଧାରା-ପରି ବଚନସୁଧା ଅବିରତ ଢାଳୁଥାଏ । ଶରତଲକ୍ଷ୍ମୀରୂପା ଶ୍ରୀରାଧା ଅମଳସଲିଳ ବତ୍ ନିର୍ମଳ ପ୍ରେମବାରି ପାନକରାଇ ମୋର ପିପାସା-ମାନ୍ଦ୍ୟ ବଢାଉଥାଏ; ପୁଣି ମୁଖ-ଦ୍ୱିଜରାଜ, ବଚନାମୃତ, କୁସୁମ-ପାରିଜାତ, ଗତି-ଐରାବତ, କଟାକ୍ଷ-ଉଚ୍ଚୈଶ୍ରବା, ବାଗାଡମ୍ବର-ବୃହସ୍ପତି, ଅଧର-ଅରୁଣ, ନଖ-ତାରକା ଓ ଊରୁ-ରମ୍ଭା, ଏ ସମସ୍ତ ଘେନି ଶ୍ରୀରାଧିକା ଅମରନଗରୀସମ ମୋତେ ଇନ୍ଦ୍ର-ସୁଖ ଦେଉଥାଏ, ଏବଂ ଆଧି-ବ୍ୟାଧି ଦୂରକରି ମୋର ଅଶ୍ୱିନୀକୁମାର ହୋଇଥାଏ । ତାହାର ତୁଳନା ପାଇଁ ସ୍ୱର୍ଗପୁର ଅବା କେତେ; ଯାହାର କଳେବର-କାନ୍ତି ସାରବ୍ରହ୍ମାଣ୍ଡରେ ପୂରିରହିଛି, ସେ କଥା କଥାକେ ନିରୁ-

ପମ; କିନ୍ତୁ ଏ ରହସ୍ୟ ନଜାଣି କେବଳ ନିଜର ବଚନ ଗୁରୁତ୍ୱ ଦେଖାଇ ହେଉଥାଏ । କୃଶୋଦରୀ ଶରୀରକୁ କୃଶକରି କମଳପତ୍ରଶଯ୍ୟାରେ ଶୋଇଥିବ; ଅସ୍ତକାଳକରମାଳୀ ପରି ମ୍ଳାନପ୍ରଭ ଓ ଶୁକ୍ଳ ଦ୍ୱିତୀୟା ଚନ୍ଦ୍ରପରି କ୍ଷୀଣକାନ୍ତି ଓ ମ୍ଳାନଜ୍ୟୋତି ହୋଇଥିବ; ସଖୀମାନେ ଚାରିପାଖରେ ବେଢ଼ି କେତେପ୍ରକାରେ କାରୁଣ୍ୟ କରୁଥିବେ; ପ୍ରିୟ ସଖୀମାନେ ପାଶରେ ବସି ଜଗଜ୍ଜନ-ବନ୍ଦନାକୁ ଅଙ୍କରେ ପକାଇ ଅପଲକନେତ୍ରରେ ଅନାଇ ଅହର୍ନିଶ ଆତଙ୍କରେ ଖାଲି ଖାଲି କାଳ ନେଉଥିବେ; କେହି ଉଶୀର ଖୋଲୁଥିବ, କେହି ପଙ୍ଖା ଡୋଳୁଥିବ, କେହି ଚନ୍ଦନ ବୋଳୁଥିବ, କେହି ଆଲଟ ବଞ୍ଚୁଥିବ, କେହି ପାଣିର ସିଞ୍ଚୁଥିବ; ପୁଣି ମୁହୁର୍ମୁହୁଃ ଦୀର୍ଘ-ନିଃଶ୍ୱାସ ଛାଡ଼ିବାର ଦେଖି କେହି 'ଶିବରକ୍ଷା କର' 'ଶିବରକ୍ଷାକର' ଡ଼ାକୁଥିବ । ପୁରୀ କୋଳାହଳରେ ପୂରିଥିବ; ହାୟ କଣକଲି ! ଶେଷରେ ଏହିଫଳ କର୍ମରେ ଲହିଥିଲି ! ନିର୍ଗୁଣ କୁମତି ଆଗରେ ଗୁଣବନ୍ତ ଅନୁରାଗରେ ନିଜର ଗୁଣ ଦେଖାଇ ଯେପରି ଦହି ହୁଏ, ଚନ୍ଦ୍ରମୁଖୀ ମୋତେ ନାନାଭାବରେ ସୁଖୀ କରି ଏବେ ସେହିପରି ଦୁଃଖିନୀ ହେଲା । ରାଧାକୁ କଷ୍ଟ ଦେଇ ମୁଁ ପୁଣି ପୁରୁଷୋତ୍ତମ ବୋଲାଏଁ, ଭକ୍ତ-ଉତ୍ସବନ୍ତ ହୋଇ ଭକ୍ତକୁ ଦୁଃଖଦେଇ ମୁଁ ପୁଣି ଭକ୍ତବତ୍ସଳନାମ ବହିଥାଏଁ, ଏ ନାମମାନ ବହିବାକୁ ମୋତେ ଲଜ୍ଜମାଡ଼ିଲାଣି । ଏହିପରି ଭାଳୁଁ ଭାଳୁଁ ନେତ୍ରୋତ୍ପଳ ଜଳରେ ଭାସିଲା । ଶ୍ରୀହରି ଉଦ୍ଧବକୁ ସମୀପକୁ ଡ଼ାକି କହିଲେ,—"ହେ ଉଦ୍ଧବ, ଗୋପକୁ ଯାଅ, ମାତାପିତାଙ୍କୁ ଆମ୍ଭର ଦଣ୍ଡପ୍ରଣାମ ଓ ଶୁଭ ସନ୍ଦେଶ ଦିଅ, ଆଉ କଳାବତୀ ଗୋପୀମାନଙ୍କୁ ପ୍ରବୋଧି କହ, ସେମାନଙ୍କ ଅଦର୍ଶନ ଓ ଅଭାବରେ ଆମ୍ଭର ଦିନ ସରୁନାହିଁ ।"

କୃଷ୍ଣବାଣୀ ଶୁଣି ଉଦ୍ଧବ କ୍ଷଣକାଳ ବିଳମ୍ବ ନକରି ଗୋପୀ ଦର୍ଶନ ଇଚ୍ଛାରେ ତରତର ହୋଇ ରଥାରୋହଣ କଲେ ଏବଂ ମନେ ୨ ଭାବିଲେ "ମୋର ଆଜ କି ଭାଗ୍ୟ ! ଏଣେ ପ୍ରଭୁଙ୍କ କାର୍ଯ୍ୟ କରିବି; ତେଣେ ସାଧୁ-ଭକ୍ତମାନଙ୍କର ଦର୍ଶନ-ଲାଭ ହେବ । ଯଦି ପ୍ରସନ୍ନ ନ ହେଲେ ଏତେ-

ଗୁଡ଼ିଏ ମଙ୍ଗଳ ଏକ ସମୟରେ ଠୁଳ ହୁଏ ନାହିଁ; ସବୁ କଥାରେ ଭଗବାନହିଁ କର୍ତ୍ତା ।" ଏହିପରି ଭାବୁଁ ୨ ତାହାଙ୍କର କଳେବର କଦମ୍ବପୁଷ୍ପ ପ୍ରାୟ ରୋମାଞ୍ଚିତ ଓ ପୁଲକିତ ହେଲା; ନୟନରୁ ଅଶ୍ରୁ ଗଳିବାକୁ ଲାଗିଲା । ଉଦ୍ଧବ ପଥସାରା କୃଷ୍ଣନାମକୀର୍ତ୍ତନରେ ଭୋଳ ହେଲେ ଏବଂ ସାୟଂକାଳରେ ଗୋପରେ ପ୍ରବେଶ କରି ନନ୍ଦଦ୍ୱାର ଆଗରେ ରଥ ଛିଡ଼ାକରାଇଲେ ।

ଦରିଦ୍ର କୋଟିଏ ସୁବର୍ଣ୍ଣମୁଦ୍ରା ପାଇଲେ ଯେପରି ହୁଏ, ନନ୍ଦରାଣୀ ସେହିମନ୍ତ ହୋଇ ଉଦ୍ଧବଙ୍କୁ ଆସନ ଦେଲେ ଏବଂ ନାନାପ୍ରକାରରେ ସମ୍ମାନ ଦେଖାଇ କୃଷ୍ଣସମାନ ଆଦର କଲେ । କୃଷ୍ଣଦୂତ ସନ୍ଦେଶ ଦେଇ ଶୟ-ନରେ ନିଶି ଅବସାନ କଲେ । ପ୍ରାତଃକାଳରେ କେଶବନାମ ସ୍ମରଣପୂର୍ବକ ଶଯ୍ୟା ତ୍ୟାଗ କରି ନିତ୍ୟକର୍ମମାନ ସତ୍ୱର ସମାପନ କଲେ । ତଦନନ୍ତର କୃଷ୍ଣଙ୍କ ଉଦନ୍ତ ଦେବାପାଇଁ ବାହାର କରି ଉଦ୍ଧବ ଗୋପୀମାନଙ୍କ ପାଖରେ ଉପସ୍ଥିତ ହେଲାମାତ୍ରେ ସେମାନେ ତାଙ୍କୁ ଆସନରେ ବସାଇ ଉତ୍ସୁକ ମନରେ ତାହାଙ୍କୁ ବେଢ଼ି ବସିଲେ । ବୁଭୁକ୍ଷୁ ସୁଖାଦ୍ୟ ଖାଇଲେ ବା ପିପାସୁ ସୁପେୟ ପିଇଲେ ଯେପରି ପ୍ରମୁଦିତ ହୁଏ, ଭକ୍ତ ଭକ୍ତ-ଦର୍ଶନରେ ସେହିପରି ହୁଏ । ଏହି 'ଭକ୍ତ-ଭେଟ-ମନ୍ତ୍ର' ଦୁଃଖିନୀ ଗୋପିକାମାନଙ୍କର ସନ୍ତାପ ନାଶ-କଲା । ଶ୍ରୋତା ଓ ବକ୍ତା ସମସ୍ତେ କୃଷ୍ଣ-ପ୍ରସଙ୍ଗ-ସୂଚନାରେ ଅପାର ଅହ୍ଲାଦ ଅନୁଭବକଲେ । ବ୍ରଜବାଳାମାନଙ୍କର ତୃଷିତ କର୍ଣ୍ଣ କୃଷ୍ଣକଥା ପିଇବ ବୋଲି ଅଧୀର ହେଲା ।



## ଦ୍ୱାତ୍ରିଂଶତ୍ ପରିଚ୍ଛେଦ ।



କୃଷ୍ଣଦୂତଙ୍କୁ ପାଖରେ ବସାଇ ବ୍ରଜରମଣୀମାନେ ମନତୋଷରେ ପଚାରିଲେ, "ହେ ଉଦ୍ଧବ, କୃଷ୍ଣ ବଳରାମଙ୍କର କୁଶଳ କହ କହ; ଯେ

ଆମ୍ଭମାନଙ୍କୁ ଏତେ ଅବସ୍ଥା କରାଇଲା ସେ କପଟୀ ଅକ୍ରୂର କଥା କହ, କଂସ ମହାପାତ ଅତି ଅନୀତ କରି ଜନଗଣଙ୍କୁ ମହାବ୍ୟଥା ଦେଇ କପରି ମରିଗଲା, ତାହା କହ, କୁବୁଜାର ସଙ୍ଗ ଶୁଭତ ? ତା କଥା ଶୁଣିବାକୁ ବଡ଼ ଦୁର୍ଲ୍ଲଭ, କଂସ-କଣ୍ଟକରେ ପ୍ରବେଶ କରି କୃଷ୍ଣ କେତେ ଲାଭ କରିଛନ୍ତି ତାହା ଆଗେ କହ ।" ଉଦ୍ଧବ ଧୀରେଧୀରେ କହିବାକୁ ଲାଗିଲେ, "ମାଧବ କୁଶଳ-ମନ୍ଦିର, କେବଳ ତୁମ୍ଭର ବିରହରେ ସେ ବଧୂର ଓ ତୁମ୍ଭର ଭକ୍ତି-ବହ୍ନି ତାହାଙ୍କୁ ଅସ୍ଥିର, ସେ ତୁମ୍ଭନାମକୁ ଜପାମାଳି କରି ଶ୍ରୀଅଙ୍ଗକୁ ଖିନ୍ନ କରିଛନ୍ତି, ସେ ଯେତେ କଷ୍ଟ ପାଉଛନ୍ତି, କହିଲେ ତୁମ୍ଭେମାନେ ପ୍ରତ୍ୟୟ ଯିବନାହିଁ; ସେ ସମସ୍ତ ବିଷୟ ସୁଖ ଅନ୍ତର କରିଛନ୍ତି; ପ୍ରେମପଥରେ ସୁଖି ଏତେ ଦୁଃଖ ପାଇବାକୁ ହୁଏ ! ଘବଲେ ପ୍ରେମ ଉଦ୍‌ଗତ ହୁଏ ।"

ଉଦ୍ଧବ ବଚନ ଶୁଣି ବ୍ରଜକାମିନୀମାନେ ଅଭିମାନରେ କହିଲେ.— "କେବଳ ସେବକବତ୍ସଳ ଲୋକର ସେପରି ହୋଇଥାଏ; କିନ୍ତୁ ତାଙ୍କର କାହିଁକି ସେପରି ହେବ, ସେକି ଲୋକମଧ୍ୟରେ ଗଣା ? କୁବୁଜାର ସୌଭାଗ୍ୟକୁ କଂସ ବଧକରିବାକୁ ଯାଇଥିଲେ; କଂସ ତ ଯାଇଁ ଶୟନ ପାଇଲା; ସେ କପାଁ ଫେରି ନ ଆସିଲେ ? କହିଥିବା କଥାକୁ ଅନ୍ୟଥା କରିବା ପ୍ରଭୁପଣର ଦୋଷ ନୁହେଁ କି ? ଆମ୍ଭେ ଗୋପନାରୀ କେଉଁ ସ୍ତର ଲୋକ; ସେହି ସିନା ଆମ୍ଭମାନଙ୍କୁ ଏତେ ସହି କଲେ ! ବିଷବୃକ୍ଷ ଲଗାଇ ନିଜ ହସ୍ତରେ ଛେଦନ କରିବା ତ ଉଚିତ ନୁହେଁ । କୃଷ୍ଣ କେଉଁ ନୀତି ନ ଜାଣନ୍ତି ? ଅନାଥ କରି ଆମ୍ଭମାନଙ୍କୁ କୁଳରୁ ଛଡ଼ାଇ ଦୁଃଖରେ ସଡ଼ାଇ କେଉଁ କୀର୍ତ୍ତି ପାଉଛନ୍ତି ? କୃପାସିନ୍ଧୁ ନାମ ବହି ଦାସୀମାନଙ୍କୁ କୃପା ନକରି ମଥୁରାପୁରୀରେ ରହିଲେ କାହିଁକି ? ଯେଉଁ ପ୍ରଭୁ କାର୍ଯ୍ୟ ପାଇସାରି ସେବକକୁ ନିରାଶ କରେ, ସେ ପ୍ରଭୁକୁ କଦାପି ବିଶ୍ୱାସ ନାହିଁ, ସେ ପୀୟୂଷ ଦେଲେହେଁ ତାହା ସାକ୍ଷାତ୍ ବିଷ; ସେ କଅଁଳେଇ କଅଁଳେଇ ଯେତେ କହିଲେ ମଧ୍ୟ ତାହାକୁ କଦାପି ପରତେ ଯିବାର ନୁହେଁ; ଯେ ତାହାକୁ ପରତେ କରେ ସେ ପଛରେ ଆମ୍ଭମାନଙ୍କ ପରି ଖଳ ହେଉଥାଏ, ସେ ଆମ୍ଭମାନଙ୍କୁ

କେତେ ଆଶା ଦେଲେ, ଆମ୍ଭେମାନେ ମଧ୍ୟ ସବୁମତେ ଭରସା କଲୁଁ, ଏବେ କିଛିମାତ୍ର ହେଲା ନାହିଁ, ହେଲା କେବଳ ଆମ୍ଭର ଶରଦରେ ସ୍ୱତକର ଦଶା। ତାଙ୍କର କଥା ଅମୃତ ପରି ମଧୁର ଓ କର୍ପୂର ପରି ଶୀତଳ; ମାତ୍ର ତାଙ୍କର ସେ କପଟ-କରୁଣାପୂର୍ଣ୍ଣ କୁଟିଳକର୍କଶ ହୃଦୟକୁ ନମସ୍କାର। ଯେଉଁ ଦିନୁଁ ସେ କୁବୁଜା କୁଜ ହରିଲେଣି, ସେ ଦିନୁ ଆମ୍ଭ-ମାନଙ୍କ ଅଙ୍ଗ କଣ ହେଉଛି। ବଡ଼ ପ୍ରଭୁମାନେ କିଛି ନ ବିଗ୍ଭରି ନିଜ ଇଚ୍ଛାରେ କାମ କରନ୍ତି: ସୁତରାଂ ସେମାନେ ଯଦି ଅବ୍ୟବହାର କରନ୍ତି, ତେବେ ନୀତମନ୍ତ ବିଚକ୍ଷଣ ଲୋକମାନେ କଣ ନ କହିବେ? ଅଜ୍ଞଲୋକ-ମାନେ କଣ ନ କରିବେ? କସ୍ମୈବାର ବନ୍ଦନା କଲି ପ୍ରାୟ ସେ ଏତେ ଛନ୍ଦ ଛନ୍ଦ କଥା କହନ୍ତି ଯେ ଯେଉଁ ଲୋକ ଶୁଣିବ ସେ କଥାଛନ୍ଦରେ ବନ୍ଦୀ ହୋଇ ଆନନ୍ଦରେ ତାଙ୍କର ପଦାରବିନ୍ଦକୁ ବନ୍ଦନା କରିବ। ଯେ ଗଲା ସେ ଗଲା, ଆଉ ଲେଉଟିବ ନାହିଁ। ଶୁଆକୁ କାନନରୁ ଧରିଆଣି ଯେତେ ଯତ୍ନରେ ପଢ଼ିବାକୁ ଶିଖାଇଲେ ମଧ୍ୟ ସେ ଥରେ ଗଲେ ଆଉ ଫେରେ ନାହିଁ। ମୂ ଲକ୍ଷାଣି ସେ ପରି କଲେ। କୁସୁମକଳିକୁ ଅଳିପରି ଗୋପବାଳୀଙ୍କୁ ବନମାଳୀ ଏତେ ସରି କଲେ। ତୁମ୍ଭେ ଆମ୍ଭମାନଙ୍କୁ କଣ କହିବ, କୁଜପିଠି ହିଧା ହୋଇ ସବୁ କହୁଛୁ। ଯେତେବେଳେ କହିବାକୁ କେହି ନାହିଁ, ସେତେବେଳେ ଅନ୍ୟାୟ କରିବା ତାଙ୍କର କେତେମାତ୍ର। ରଜତ ତେଲ-ମିଶା ହେଲେ କେଣେ ବିକାଏ ନାହିଁ ସତ, ମାତ୍ର ତୁମ୍ଭଙ୍କୁ କଣ ରଜତ ଜଣା ନାହିଁ, ପ୍ରଭୁପଣ ଥିଲେ ସବୁ ସୁନ୍ଦର। କୃତ୍ତିବାସ ଦିଗମ୍ବର ହେଲେ ସୁଦ୍ଧା କେହି ତାଙ୍କୁ ଉପହାସ କରେ ନାହିଁ; ତାଙ୍କୁ କି ଯାନ ମିଳେନାହିଁ? ତାଙ୍କୁ କି ଭୂଷଣ ଦୁର୍ଲ୍ଲଭ? ତଥାପି ସେ ଅସ୍ଥିମାଳ ପକାଇ ବୃଷଭ ଆରୋ-ହଣ କରି ଖେଳ ହୋଇ ଶ୍ମଶାନରେ ବୁଲୁଥାନ୍ତି। ବିଷ୍ଣୁ ଫଣୀ ଉପରେ ଶୟନ କଲେହେଁ ସମସ୍ତେ ତାଙ୍କର ଦାସ। ତୁମ୍ଭେ ବା କହିବ, ଆମ୍ଭେ-ଗୁଡ଼ାକ ଆଶ୍ରିତ; ଆମ୍ଭମାନଙ୍କୁ ସେ ଏଡ଼େ ବଡ଼ କରିଦେଲେ, ତେବେ ବି ଆମ୍ଭେମାନେ ଏପରି କହୁଛୁଁ; କିନ୍ତୁ ଉଦ୍ଧବ ଶୁଣ, କାଖରେ କୋଳରେ ଧରି ନାନାସେବା କରି ଆମ୍ଭେମାନେ ପରା ତାଙ୍କର ଚିର ପରଗୃହିକା ହୋଇଅଛୁଁ।

କଥା ପ୍ରସଙ୍ଗରେ ଏତେ କହିଲୁଁ; ସେ ଯାହା ଇଚ୍ଛା ତାହା କରନ୍ତୁ; କୁବୁଜା-ବନ୍ଧୁ ଯୋଗୁଁ କୁମ୍ଭକାର ଉହାପର ଆମ୍ଭେମାନେ କେବଳ ଅନ୍ତର୍ଦାହ ପାଇଲୁଁ। କୁଳଶୀଳ ଲଜ୍ଜା ଛାଡ଼ି କପଟପ୍ରୀତିରେ ପଡ଼ି ଆଶା ଅନଳରେ ପୋଡ଼ିମରୁଛୁଁ। କପିଳ-କୋପରେ ସଗର-ପୁତ୍ରମାନଙ୍କ ପରି ବିରହ-କୋପରେ ଆମ୍ଭେ-ମାନେ ଜଳିଗଲୁଣି। ହେ ଉଦ୍ଧବ, ଆମ୍ଭମାନଙ୍କର ବର୍ଣ୍ଣିତବାଣୀ ଶୁଣି ପ୍ରସନ୍ନ ହୋଇ ତୁମ୍ଭେ ଭଗୀରଥପ୍ରାୟ କୃଷ୍ଣଗଙ୍ଗା ବେଗେଁ ଆଣିଦିଅ। ସମସ୍ତ ଲୋକରେ ତୁମ୍ଭର କୀର୍ତ୍ତି ରହୁ। ବିବେକୀ ଲୋକଙ୍କୁ ଅଧିକ କହିବାର ନୁହେଁ। ପରୋପକାରୀହିଁ ସଂସାରରେ ବଡ଼ ଲୋକ। କୃଷ୍ଣଠାରେ ଭକ୍ତି କରି ତୁମ୍ଭର କେଉଁ ନୀତିଜ୍ଞାନ ନ ହୋଇଛି! ଶ୍ରୁତି ପରି କହେ 'ଧର୍ମ କର୍ମ କଲେ ସ୍ୱର୍ଗଧାମ ମିଳେ'। ତୁମ୍ଭଙ୍କୁ ଏତକ କାକୂତିମିନତି କରି କହୁଛୁଁ, 'ଆମ୍ଭମାନଙ୍କୁ ଦୟା କର'। କୃଷ୍ଣ ସତ୍ୟବାଦୀ ଜାକପ୍ରାୟ ସତ୍ୟ-ବାଦୀ ହୋଇ ସୁଦ୍ଧା ଆମ୍ଭମାନଙ୍କର ଦମ୍ଭ ଚୂର୍ଣ୍ଣ କଲେ। ଆମ୍ଭେମାନେ କୃଷ୍ଣ ପାଇଁ ଝୁରୁଅଛୁଁ। ତୁମ୍ଭଙ୍କୁ ଆଶା କରି ରହିଲୁଁ; ହେ ଉଦ୍ଧବ, ଆଶାଦେଇ ଧର୍ମ ଅଛି ବୋଲି ଜାଣି, କଦାପି ଏ ଆଶାୟୀ ଜନଙ୍କୁ ନିରାଶ କରିବ ନାହିଁ ଟି।"

ଅତିଶୟ ଚିତ୍ତକ୍ଷୋଭ ହେତୁରୁ ଗୋପୀମାନେ ଏତକ କହି ନୀରବ ହେଲେ; ମାତ୍ର ସେ ନୀରବତା ଶତମୁଖ ହୋଇ ଉଦ୍ଧବକର୍ଣ୍ଣରେ ଯେପରି କହିବାକୁ ଲାଗିଲା,—

'କୃଷ୍ଣ-ଗଙ୍ଗା ବେଗେଁ ଆଣିଦିଅ
କୀର୍ତ୍ତି ସମସ୍ତ ଲୋକରେ ପାଅ।'

## ତ୍ରୟସ୍ତ୍ରିଂଶତ୍ ପରିଚ୍ଛେଦ ।

ଉଦ୍ଧବ ବ୍ରଜବାଳା ମାନଙ୍କର ସାଭିମାନ କାତର ବାଣୀ ଶ୍ରବଣକରି ପ୍ରବୋଧ ଛଳରେ ଉତ୍ତର କଲେ;—"ହେ ଗୋପିକା ଭକ୍ତମାନେ, ମାଧବ କାହାକୁ କେବେ ବିସ୍ମରଣ କରନ୍ତି ନାହିଁ, ସେ ସବୁର ଭରସାସ୍ଥଳ, ପୀତବାସ ଏପରି ଯେ, କେହି ଶତ୍ରୁପଣ କଲେମଧ୍ୟ ତାକୁ ସେ ନିର୍ବାଣ ଦିଅନ୍ତି । ସେ ତୁମ୍ଭମାନଙ୍କୁ କାହିଁକି ଅନ୍ୟପ୍ରକାର କରିବେ; ତୁମ୍ଭେମାନେ ମାନ କରନାହିଁ । କଂସକେଶିଆଦି ଅମରବିବାଦି-ମାନଙ୍କର କାହାର କି ଭକ୍ତି ଥିଲା ? କୃପାଳୁ ପୁଣି ଏକି ଏକକରି ସେ ସମସ୍ତଙ୍କୁ ପରମ ଗତି ଦେଲେ । ଯେ ସେବା କରେ, ତାହାକୁ ସେ ଯାହା କରନ୍ତି ତାହା କି ବଚନରେ ପ୍ରକାଶ କରିହେବ ? କୁବୁଜା ଚନ୍ଦନଟିକାଟିକ ବନ୍ଦନ କରି କେତେ ସୁଖ ପାଇଲା; ମନ-ବଚନ-କର୍ତ୍ତବ୍ୟ ଦେଲା ଲୋକର କଥା କିଏ କହିବ ? ପ୍ରହ୍ଲାଦକୁ ସେ କେତେ ଦୁଃଖରୁ ରଖି କେଉଁ ପଦ ନଦେଲେ ? ଧ୍ରୁବ ବା କଣ ଶିଖିଥିଲା, କିନ୍ତୁ ଭକ୍ତିବଳରେ ତାକୁ କିଏ ଟଳିଅଛି ? ତେଣୁ ଶ୍ରୀହରି ପରା ତାକୁ ଧ୍ରୁବ-ଧାମ ଦାନ କରିଛନ୍ତି । କୃଷ୍ଣ ମହିମା ଅତି ଅପାର, କଥାରେ ବର୍ଣ୍ଣନା କରି କିଏ ତାହାର ପାର ପାଇବ ? ଯୋଗିମାନେ ଯୁଗ ଯୁଗାନ୍ତର କଠିନ ଯୋଗ ସାଧନ କରି ଯାହାଙ୍କୁ ଦେଖି ପାରୁନାହାନ୍ତି, କେଉଁ ଭାଗ୍ୟବଳରେ ତାହାଙ୍କୁ କୋଳରେ ଘେନି ଏତେକାଳ ତୁମ୍ଭେମାନେ ଲୀଳା ଖେଳା କଲ ? ତାଙ୍କର ପୁଣି ଏତିକି ଦୟା ! କହିଲ ଭଲା, କାହାପ୍ରତି ସେ ନିର୍ଦ୍ଦୟ; ତୁମ୍ଭପ୍ରତି ନା ଯୋଗୀପ୍ରତି ? ଇନ୍ଦ୍ର, ଚନ୍ଦ୍ର, ଅମର, ନରେନ୍ଦ୍ର କେହି ତାଙ୍କର ସମାନ ନୁହେଁ । ତୁମ୍ଭେ-ମାନେ ମୋର କଥା ଶୁଣ; ନିଷ୍କାମ ଭାବରେ କର୍ମ କଲେ ଚିତ୍ତ ଶୁଦ୍ଧହୁଏ; ପୁଣି ଚିତ୍ତ ପ୍ରସନ୍ନ ଓ ନିର୍ମଳ ହେଲେ ଈଶ୍ୱରଜ୍ଞାନ ହୃଦୟକୁ ଅଧିକାର କରେ ଏବଂ ସେଥି ସଙ୍ଗେ ସଙ୍ଗେ ବୈରାଗ୍ୟର ଉଦୟ ହୁଏ । ଏହି ଜ୍ଞାନର ପୂର୍ଣ୍ଣ ବିକାଶରେ ଶ୍ରଦ୍ଧା, ଭକ୍ତି ଓ ପ୍ରେମ ଭକ୍ତର ହୃଦୟରାଜ୍ୟରେ ତରଙ୍ଗ ଖେଳାଏ ଏବଂ ଭକ୍ତ ସର୍ବତ୍ୟାଗ କରି ତାହାଙ୍କ ଚରଣରେ ମନ ପ୍ରାଣ

ସ୍ଥିର ରଖେ । ସ୍ଥିରତା ନିତ୍ୟ ଓ ଅଚଳ ହେଲେ ହିଁ ଭକ୍ତ ମୁକ୍ତହୋଇ ଜନ୍ମମରଣବନ୍ଧନ ଛିନ୍ନକରି କୃଷ୍ଣ ପାଦପଦ୍ମରେ ଲୀନ ହୁଏ । ବିରହ ତ ସଂସାରାସକ୍ତ ଜନର ହୋଇଥାଏ; ମାତ୍ର ଯାହାର ଏକମାତ୍ର ଭରସା କୃଷ୍ଣ, ତାହାର କେଉଁ ବିଷୟର ଅଭାବ ଯେ ସେ ବିରହ ଦୁଃଖ ଭୋଗ କରିବ । କୃଷ୍ଣ କି କେବେ ଏ ଜଗତରେ କାହାକୁ ତ୍ୟାଗ କରିଛନ୍ତି ? ତେବେ, କୃଷ୍ଣଙ୍କ ଅଦର୍ଶନରେ ଭକ୍ତ ଯେ ପାଗଳପ୍ରାୟ ହୁଏ, ତାହା ଦୁଃଖ ନୁହେଁ, ତାହା ତାହାର ଅନନ୍ତ ଔତ୍ସୁକ୍ୟ; ସର୍ବବ୍ୟାପୀ ଅନାଦି ଅନନ୍ତଙ୍କୁ ସର୍ବଦା ସର୍ବସ୍ଥଳରେ ସମ ଭାବରେ ଅନୁଭବ କରିବାର ଏହି ମହାବ୍ୟାକୁଳତା କେବଳ ପରମ ସୌଭାଗ୍ୟଶାଳୀ ଭକ୍ତ ଭିନ୍ନ ଅନ୍ୟ କାହାର ହୁଏ ନାହିଁ । ତୁମ୍ଭେମାନେ ମହା ସୁଖିନୀ, ତୁମ୍ଭମାନଙ୍କର ସେହି ବ୍ୟାକୁଳତା ଉପସ୍ଥିତ ହୋଇଅଛି । ଅତଏବ ବୃଥା ଅଭିମାନ କରନାହିଁ । କର୍ମ କରି ସଂସାର ଧର୍ମ ପ୍ରତିପାଳନ କର ଏବଂ ମନ କୃଷ୍ଣଠାରେ ରଖି ଭୌତିକ ଲୀଳା ସାଙ୍ଗ କର ।"

ଏହାଶୁଣି ଜଣେ ଗୋପୀ ବିରହ-କାତର କଣ୍ଠରେ କହିଲା,— "ଆମ୍ଭପରି ତୁମ୍ଭର ଅନୁଭବ ନାହିଁ; ତେଣୁ ତୁମ୍ଭେ ଏପରି କହୁଛ; କୃଷ୍ଣ ନିଗ୍ରହ କରନ୍ତି ନାହିଁ, କିନ୍ତୁ ନିଗ୍ରହ କଲେ ଏହିପରି ବେଶ କରନ୍ତି; ଏହି ଦେଖ, କେଶ, ବାସ ଓ 'ବିରହିଣୀ' ବେଶ ଆମ୍ଭର; ଏପରି ଆଉ କଣ କରନ୍ତା ? କୃଷ୍ଣଠାରେ ପ୍ରୀତିକରି ଏହାହିଁ ପାଇଲୁଁ । ଏହାହିଁ ଶେଷଫଳ ହେଲା ଯେ ସର୍ବତ୍ୟାଗିନୀଙ୍କର କୃଷ୍ଣତ୍ୟାଗହିଁ ସାର ହେଲା । ଉଦ୍ଧବ ତୁମ୍ଭେ ଅତି ସତ୍ୟ କଥା କହିଲ, ତାଙ୍କପରି ବ୍ରହ୍ମାଣ୍ଡରେ ଆଉ ଜଣେ ନାହିଁ । ଆମ୍ଭମାନଙ୍କର ଜୀବନ ବିକଳ ହୋଇଅଛି; ଭୂତ ଲାଗିଲାପରି ଚିତ୍ତ ଥୟ ହେବାକୁ ନାହିଁ; ଯାତନାର ଆଉ ଅବଧି ନାହିଁ । ଏଥିରେ ପୁଣି, ରଜନୀକାନ୍ତ ରଜନୀରେ ଗଗନରୁ ବିଷ ବର୍ଷଣ କରି ଗୋପୀ ବଂଶ ନାଶ କରିବାପାଇଁ ଚେଷ୍ଟା କରୁଅଛି; ମନ୍ଦ ସମୀର କୁଆଡ଼ୁ ଆସି ଦ୍ୱନ୍ଦ କରି ଶରୀରକୁ ଜାଳୁଅଛି; କର୍ପୂର ଚନ୍ଦନ ବିଷଧରଠୁଁ ବଳିଲାଣି; କସ୍ତୁ

କହିଲେ ସରିବ ନାହିଁ, କହିବାକୁ ବା ଆଉ ପ୍ରାଣ କାହିଁ ? ଦୁର୍ଭାଗ୍ୟ ପଡ଼ିଲେ ହିତହିଁ ଅହିତ ହୁଏ । କାଳିନ୍ଦୀର ଶୀତଳ ସଲିଳରେ କିଏ ଅନଳ ଲଗାଇଲା କହ; ଏକଥା କହିବାକୁ ଆଚମ୍ବିତ, ଶୁଣିବାକୁ ଅଦ୍ଭୁତ; ଏଥିରେ ସନ୍ତାପୀ ଜନ ସ୍ନାନ କରି ପୁଣି ଭାଗ୍ୟବନ୍ତ ହୁଏ ବୋଲି ତୁମ୍ଭେ କହୁଥାଅ ! ଆମ୍ଭେମାନେ ବୃନ୍ଦାବନ ଧର୍ମଭୂମିକୁ କଦମ୍ବଶୂନ୍ୟ କଲୁଁ ଏବଂ ପଦ୍ମସରକୁ ପଦ୍ମହୀନ କଲୁଁ । ହାୟ, ତଥାପି ତାଙ୍କର ଦୟା ହେଲନାହିଁ ! ତେବେ କି ନଷ୍ଟବୁଦ୍ଧି ପାପି ଗୋପୀ—ପ୍ରାଣ ପଦ୍ମବନରେ କୃଷ୍ଣବିୟୋଗ—ଶିଶିର ପଡ଼ିଲା ? ବିଧି ପ୍ରତିକୂଳ ହେଲେ କଳ୍ପତରୁ ନିଷ୍ଫଳ ହୁଏ, ଚିନ୍ତାମଣି ଚିନ୍ତାମଣି ହୁଏ ଏବଂ କାମଧେନୁ ଦୁଗ୍ଧହୀନା ହୁଏ । ସୁଧା ଗ୍ରାସକରି ଯଦି କେହି ମରେ, ତେବେ ତାକୁ ଅମୃତ କାହିଁକି ବୋଲିବା ?; ସ୍ପର୍ଶମଣି ଯଦି ସ୍ପର୍ଶମାତ୍ରେ ଲୌହକୁ ସ୍ୱର୍ଣ୍ଣ ନକରେ, ତେବେ ସେ ଅକର୍ମଣ୍ୟ ଶିଳା ବୋଲି କାହିଁକି କହା ନଯିବ ? କେବଳ ସ୍ୱ ସ୍ୱକର୍ମର ଅନାଦର କରିବାପାଇଁ କଣ ଏମାନଙ୍କୁ ଏ ଗୁଣମାନ ଦିଆହୋଇ-ଅଛି ? କୃତାର୍ଥ ହେବେ ବୋଲି ସିନା ପାପମାନେ ତୀର୍ଥଯାତ୍ରା କରନ୍ତି; ଯେଉଁ ତୀର୍ଥ ପାପୀକୁ ମୁକ୍ତ ନକଲା, ସେ କି ତୀର୍ଥ ବୋଲାଯିବ ? ଶ୍ରୁତି କହେ, 'କରିବା, ହରିବା, ଛାଣିବା, କାଟିଁ ବଢ଼ାଇବା ଆଦି ଯାହାର ଯେଉଁ ଧର୍ମ ଓ ଶକ୍ତିଗତ କର୍ମ, ସେ ତାହା ନକଲେ ବା ଅନ୍ୟଥା କଲେ, ତାହାର ଗୌରବନ୍ୟୂନ ହୁଏ ।' କରୁଣା-ସାଗର ଆମ୍ଭମାନଙ୍କୁ କୃପାକଲେ ନାହିଁ, କିନ୍ତୁ କୈତବ ଧାତ୍ରୀ କାଳକୂଟ ଦେଇ ମୋକ୍ଷ ପାଇଗଲା: କୃପାଳୁ କୁବୁଜା-କାନ୍ତ ଯେତେକ ପ୍ରାଣ ନେବାପାଇଁ ଆସିଥିଲେ ସମସ୍ତଙ୍କୁ ମୁକ୍ତପ୍ରାଣ ଦେଲେ; ଯାମଳାର୍ଜ୍ଜୁନରେ ଦଉଡ଼ି ଦେଇ ଉଡ଼ ବାନ୍ଧିଲା ମାତ୍ରେ ଯାମଳାର୍ଜ୍ଜୁନ ସାକ୍ଷାତ ଦେବତା ହୋଇ ସ୍ୱର୍ଗକୁ ଗମନ କଲା; କାଳିନ୍ଦୀ ଜଳରେ ପାଦ କମଳରେ କାଳୀ ଦଂଶି ଦେଲା; 'ନାଗୁଣୀ' ଟିକିଏ ସ୍ତୁତି କରିଦେଲାମାତ୍ରେ କାଳୀ ଅଭୟ ପାଇଗଲା । ଯେ ତାଙ୍କର ଅପକାର କରେ ସେ ତାହାର ଉପକାର କରନ୍ତି; ଅଥଚ ଆମ୍ଭେମାନେ କାଖର କୋଳରେ ଧରି କାହିଁରେ

ହେଲୁଁ ନାହିଁ; କୃଷି ଧୋଇଗଲେ ଯେପରି କୃଷିକାରର ଶ୍ରମମାତ୍ର ସାର ହୁଏ, ସେହିପରି ଆମ୍ଭମାନଙ୍କର ଶ୍ରମମାତ୍ର ଲାଭ ହେଲା; କଳନ୍ତର-ଲୋଭରେ ଦେଇଥିବା ମୂଳ ହୃଦୟକୁ ବଳକରି ବୁଡ଼ାଇଲା । ଋଷିମାନେ କହନ୍ତି, 'ଦେଇଥିଲା ଦ୍ରବ୍ୟ ପାଇ'; ଆମ୍ଭେମାନେ ତାଙ୍କୁ ମନ ଦେଇଥିଲୁଁ, ତେବେ ସେ କାହିଁକି ଆମ୍ଭମାନଙ୍କୁ ମନ ନ ଦେଇ ଦୁଃଖ ଦେଲେ; ଋଷିଙ୍କ ବୋଲ କେଉଁଠାରେ ରହିଲା ? ପୁଣି ତୁମ୍ଭେ କହୁଛ, 'ସେ ଭଲ; ସେ କାହାକୁ ନିରାଶ କରନ୍ତି ନାହିଁ !' ମଧୁମକ୍ଷିକା କେତେ ଶ୍ରମ ପାଇ କେତେଦୁଃଖ ସହି କେତେ କଷ୍ଟରେ ମଧୁ ସଞ୍ଚିଥାଏ, ଅନ୍ୟକେହି ତାଙ୍କମୁଖରେ ହୁତାଶନ ଦେଇ ମଧୁପାନ କରି ଚାଲିଯାଏ; ଏ ପୋଡ଼ା-ମୁଖୀମାନଙ୍କର କର୍ମଭୋଗ ସେହିପରି । ଭ୍ରମର କୁସୁମରୁ ମକରନ୍ଦ ହରି ମଧୁକର ନାମ ଗ୍ରହଣ କରିଅଛି କିନ୍ତୁ ଗୋପୀନିକରକୁ ଅନାଥା କରି କୃଷ୍ଣ କପରି ଗୋପୀନାଥ ନାମ ବୋଲାଉଛନ୍ତି ? ଏପରି ବିପରୀତ କଥା କେଣେ ଶୁଣିଛ ? ନାମ ଗୋପୀ-ବଲ୍ଲଭ କିନ୍ତୁ, କାନ୍ତ ଅଚେତନ କୁବୁଜାର, କି ଅପୂର୍ବ ପ୍ରୀତି ! ହେଉ, ଭଲ ଆଖିରେ ସବୁବେଳେ ଦେଖୁଥାନ୍ତୁ ତାଙ୍କୁ । କୁମୁଦିନୀ ବାନ୍ଧବକୁ ଗଗନ-ପଣରେ ଦେଖି କୁମୁଦିନୀ ଧନୀ ବିଷାଦିତା ହେଉଥିବ ସତ,ମାତ୍ର ଆମ୍ଭେମାନେ କୃଷ୍ଣଚନ୍ଦ୍ରଙ୍କୁ ନଦେଖି କୁମୁଦିନୀଠାରୁ ଅଧିକତର ଦୁଃଖିନୀ । ଏବିଚ୍ଛେଦ କୋକମିଥୁନ ବିଚ୍ଛେଦଠାରୁ ଗୁରୁତର; ହେ ଉଦ୍ଧବ, ଏପରି କାହିଁକି ହେଲା ? ପୂର୍ବେ କାହାର ସଙ୍ଗ-ଭଙ୍ଗ କରି ଶାପ ପାଇଥିଲୁଁକି ? ବିହି ଏମାନଙ୍କପରି ଭଲ କରିଥାନ୍ତା; ତାହାଙ୍କୁ ସୃହିଁ କାଳ ନଅନ୍ତୁ । କାର୍ଯ୍ୟାନୁ-ସାରିଣୀ ପ୍ରୀତି,ଶକ୍ତି ଓ କୀର୍ତ୍ତି କଦାପି ସଦାକାଳେ ରହେ ନାହିଁ; ଏଗୁଡ଼ିକ ଯଦି କେବଳ କାର୍ଯ୍ୟଉପରେ ନିର୍ଭର କରେ, ତେବେ କାର୍ଯ୍ୟର ଅବସାନ ସଙ୍ଗେ ସଙ୍ଗେ ଏମାନେ ବିଲୁପ୍ତ ହୁଅନ୍ତି; ପ୍ରୀତି ପାଇଁ ସିନା ପ୍ରୀତି କରାଯାଏ, ଶକ୍ତିପାଇଁ ସିନା ଶକ୍ତି ପ୍ରୟୋଗ କରାଯାଏ ଏବଂ ମହତ୍ତ୍ୱର କୀର୍ତ୍ତିପାଇଁ ସିନା କୀର୍ତ୍ତିର ଆଶ୍ରୟ ନିଆଯାଏ । ଆହା, ଆଉ ତାଙ୍କର ବଚନ କି ଶୁଣିବୁଁ ନାହିଁ ? କରଗତ କରି କାନନକୁ ଉଡ଼ିଗଲେ ତାହାର କୋମଳ କଥନ ଆଉ କାହୁଁ ଶୁଣିବାକୁ ମିଳିବ ? ଆଉ କେତେ କହିବୁଁ; ତୁମ୍ଭେ ଖାଲି କଣ୍ଠରେ

ଶୁଣୁଥିବ ସିନା, କରି ତ ପାରିବ ନାହିଁ କିଛି; କୃପା କରି ଲୋକ ଯଦି ଆପଣା ଲୋକଠାରେ ବିବେଚ୍ଚ ନହୁଏ, ତେବେ ଅନ୍ୟଙ୍କୁ କହିଲେ ବା ଅନ୍ୟଙ୍କୁ ବୁଝାଇଲେ କି କାର୍ଯ୍ୟ ସିଦ୍ଧ ହେବ ? ହୃଦୟ ନଥିଲେ କଥାରେ କଣ ହେବ ? କଥା କହିବାକରେ ଲେଖା ନୁହେଁ; ସେପରି କଲେ ବରଂ ଅଧର୍ମ ହୁଏ । କୁସୁମ କଳିକୁ ଫୁଟାଇ ତହିଁରେ କେହି ବାସ ପ୍ରବେଶ କରାଇ ଦେଇପାରେ କି ? କର୍ତ୍ତା ବିମନ ହେଲେ ତାହାଙ୍କୁ ପ୍ରସନ୍ନ କରିବା-ପାଇଁ କୌଣସି ଉପାୟ ନାହିଁ । କରି ଓଠାରୁ ଯେଉଁ କଥା, ତାହା ସର୍ବଥା ଶ୍ରବ୍ୟଆର ମଳ; ବିଶେଷତଃ ସେପରି ପ୍ରୀତିଠାରୁ ବଡ଼କଷ୍ଟ କ୍ଷିତିରେ ଆଉ ନାହିଁ । ଶ୍ରୀହରିଙ୍କୁ ଆମ୍ଭମାନଙ୍କର କୋଟି କୋଟି ଦଣ୍ଡବତ ଜଣାଇବ । ଆଉ ଦେଖ କୁବୁଜାପାଶରେ ଥିଲାବେଳେ ଆମ୍ଭ ଦୁଃଖକାହାଣୀ ତାଙ୍କୁ କହିବ ନାହିଁ, କାଳେ ତାଙ୍କର ସୁଖକାଳରେ ଦୁଃଖ ହୁଏ । ତାଙ୍କୁ ଆମ୍ଭ ସନ୍ଦେଶ ଯଦି କେହି ଜଣା ନଯାଏ, ତେବେ କହିବ ତାଙ୍କର କୁବୁଜା-ପ୍ରୀତି ଆମ୍ଭ-ମାନଙ୍କୁ ଶଲ୍ୟ ପରି ହୋଇଅଛି ।”

ଅନନ୍ତର ଆସନ୍ନ କୃଷ୍ଣଦର୍ଶନ-ବିଷୟ ମନରେ ଭାବି ଓ ବ୍ରଜବାଳା-ମାନଙ୍କର କାତରୋକ୍ତି ସ୍ମରଣ କରି ଉଦ୍ଧବ ହର୍ଷବିଷାଦପୂରିତ ହୃଦୟରେ ସେମାନଙ୍କଠାରୁ ବିଦାୟ ନେଲେ ଏବଂ ସତ୍ୱର ଗମନ କରି ମଥୁରାପୁରରେ ଶ୍ରୀକୃଷ୍ଣସମ୍ମୁଖରେ ଉପସ୍ଥିତ ହେଲେ ।

## ଚତୁସ୍ତ୍ରିଂଶତ୍ ପରିଚ୍ଛେଦ ।



'କଂସ-କରି-କଣ୍ଠୀରବ କେଶବ' ଉଦ୍ଧବଙ୍କୁ ଦେଖି ଅତୀବ ପ୍ରସନ୍ନ ଓ ଉତ୍କଣ୍ଠିତ ହୋଇ କହିଲେ, “ହେ ଉଦ୍ଧବ, ଗୋପପୁର ସନ୍ଦେଶ କହ କହ, ଗୋପୀବୃନ୍ଦ କିପରି ଅଛନ୍ତି ?” ଉଦ୍ଧବ ଉତ୍ତର କଲେ, “ହେ ପ୍ରଭୁ ମାଧବ, ଅବଧାନ କରନ୍ତୁ, [ଗୋପୀମାନଙ୍କ କଥା

କଅଣ କହିବି ? ସେମାନଙ୍କର ଅବସ୍ଥା ଅତି ଶୋଚନୀୟ । ବେଶ-ବାସ-ବେଶ ମଳିନ ହୋଇ ଥିବାରୁ ସେମାନେ କୁଜ୍ଝଟିକାର ନଳିନୀ ପ୍ରାୟ ଦିଶୁଅଛନ୍ତି । କାହାର ଶରୀର କୃଶ ଓ ମନ ବିଷାଦପୂର୍ଣ୍ଣ; କାହାର ଆଉ କଥା କହିବାର ଶକ୍ତି ନାହିଁ ଏବଂ କେହି ଆହାର ବିହାର ଏକାବେଳକେ ତ୍ୟାଗ କରିଅଛି । କୌଣସି ଗୋପୀ ପ୍ରସନ୍ନବଦନା ନୁହେଁ କି କାହାର ବିଷୟସ୍ପୃହା ନାହିଁ । ସମସ୍ତଙ୍କ ହୃଦୟରେ ବିରହସନ୍ତାପ ବାସ କରିଅଛି । ଉଦାସୀନତା ଓ ବୈରାଗ୍ୟ ଯୋଗୁଁ କାହାର ଚିତ୍ତଶୃଙ୍ଖଳା ଛିଡ଼ିଅଛି; ସେ ବାହୁଲୀପର କଙ୍କଣକୁ କେୟୂର ରୂପେ ଓ ନୂପୁରକୁ ଗଳାହାର ରୂପେ ପିନ୍ଧିଅଛି; ଆପଣଙ୍କ ନାମକୁ ନିରନ୍ତର କଣ୍ଠରେ ଭଜନ କରି ବିରହଶଯ୍ୟାରେ ଶୋଇଅଛି; ଏବଂ ବେଳେବେଳେ ଆପଣଙ୍କୁ ଦେଖିବାକୁ ନୟନ କଷ୍ଟିତ ଫେଡ଼ି ଅନାଉଅଛି । କେଉଁ ଗୋପୀ ଆପଣଙ୍କ ଦର୍ଶନ ଲାଳସାରେ ସତୃଷ୍ଣ-ନୟନରେ ଅନାଇ ବସିଅଛି । କେହି ଆପଣଙ୍କୁ ମନେ ମନେ ଚିନ୍ତା କରୁଛି । ଆଉ ଜଣେ ଆପଣଙ୍କୁ ପାଇବା ପାଇଁ ସଙ୍କଳ୍ପ କରି ଉପାୟ କଳ୍ପନା କରୁଛି । ଜଣେ ଗୋପୀପୁଣି ନିଦ୍ରା ତ୍ୟାଗକରି ପ୍ରଭୁଙ୍କ ଗୁଣ କୀର୍ତ୍ତନ କରୁଅଛି । ଅନ୍ୟଜଣେ ମନର ଅତିଶୟ ଉଦ୍‌ବେଗ ହେତୁରୁ କୃଶ ଓ କ୍ଷୀଣ ହୋଇ ଚଳତ୍ ଶକ୍ତିହୀନା ହୋଇଅଛି । ଅପର ଜଣେ ଆପଣଙ୍କ ପ୍ରେମମୂର୍ତ୍ତି ଅସ୍ମୃତ ନ ହେବାରୁ ପ୍ରେମରେ ବିଭୋର ହୋଇ ଦିବାନିଶି ବିଳାପ କରୁଅଛି । ଜଣେ ଗୋପୀତ ଠାକୁରଙ୍କ ପାଇଁ ଉନ୍ମତ୍ତ ହୋଇ ଲଜ୍ଜାବନ୍ଧନ ଏକାବେଳକେ ତୁଟାଇ ଅଛି । ପୁଣି ଦେଖିଲି ଜଣେ ଗୋପୀ ଆପଣଙ୍କ ଅଭାବରେ ସମ୍ପୂର୍ଣ୍ଣ ଉନ୍ମାଦ-ରୋଗଗ୍ରସ୍ତ ହୋଇଅଛି, ଏବଂ ଆଉ ଜଣେ ମୂର୍ଚ୍ଛିତା ହୋଇ ଭୂତଳଶାୟିନୀ ହୋଇଅଛି । ଶୀତକାଳର ଶୀତ ରଜନୀରେ ଶରୀର ଯେପରି ହୁଏ, ସାତ୍ତ୍ୱିକ ଭାବ ଜାତ ହେବାରୁ କାହାର କାହାର ଶରୀର ସେହିପରି ପ୍ରେମ-ପୁଲକରେ କମ୍ପିତ ହେଉଅଛି ଏବଂ କାଳିକା-କାଳର କଦମ୍ବ କୁସୁମବତ୍ କାହାର ରୋମୋଦ୍‌ଗମ ହେଉଅଛି କାଦମ୍ବିନୀକାଳର କୋକିଳ ପରି କାହାର ସ୍ୱର ପ୍ରହତ ହୋଇଅଛି ଶାରଦୀୟ କେତକୀସମ କାହାର ବର୍ଣ୍ଣ ଫିକା ପଡ଼ିଅଛି । ନିଦାଘ ଘର୍ମ ଭୁଲ୍ଲ

ଅତଏବ ଚନ୍ଦ୍ରାଶ୍ରମନନ୍ଦନ କେଉଁ ଗୋପୀର ଶରୀରରୁ ଅପର୍ଯ୍ୟାପ୍ତ ସ୍ୱେଦ ଅବିରତ ବହିର୍ଗତ ହେଉଅଛି । ବର୍ଷାକାଳର ଧାରାବର୍ଷାମତ କାହାର କମଳ ନେତ୍ରରୁ ଅଜସ୍ର ନୀରଧାର ବହୁଅଛି । କାହାର ହୃଦୟନର୍ତ୍ତକୀ କୋକିଳ-ଗୀତ-ତାଳରେ ତାହାର କଳେବର-ନାଟ୍ୟଶାଳାରେ ଉଲ୍ଲଟ ଭାବରେ ନାଚ କରୁଅଛି । କଏ ଥରକୁ ଥର ମୋହ ପ୍ରାପ୍ତ ହେଉଅଛି । ସଖୀମାନେ ଆତୁର ହୋଇ ଶିବଙ୍କୁ ଡାକୁଁ ଡାକୁଁ କୋଳାହଳ କରି କହୁଛନ୍ତି, 'ଝଟ ଝଟ ଜଳ ସିଞ୍ଚ; ଧୀରେ ଧୀରେ ବିଚଣା ବିଞ୍ଚ'; କଏ କହୁଛି, 'କର୍ପୂର ଚନ୍ଦନ ଗୋଳ, ତଡ଼ବଡ ଯାଇ ଉଶୀର ଖୋଳିଆଣ' । କଏ ପଚାରୁଛି, 'ପଦ୍ମପତ୍ର ଆସିଲା ?' କଏ କହୁଛି, 'କୁମୁଦନାଳ ଆସିଛି' । ତହୁଁ ଆଉ ଜଣେ କହି ଉଠୁଛି, 'ତେବେ ତାର ହୃଦସ୍ଥଳରେ ଦେଇ ଦିଅ ।' ଏହାପରି ମୂର୍ଚ୍ଛିତାମାନଙ୍କୁ ସଚେତନ କରିବାପାଇଁ ଘରେ ଘରେ କୋଳାହଳ ଶୁଭୁଛି । କେହି କହୁଛି, 'କୃଷ୍ଣଚନ୍ଦ୍ରଙ୍କୁ ସ୍ନେହ କରିବାରୁ ଯିନା ଏତେ ଶସ୍ତି ଅର୍ଜ୍ଜିଲୁଁ, ଦେବ-ମାନବଙ୍କର ବଇସୀ ହେଲୁଁ' । ଏହା ଶୁଣି କେହି ପ୍ରତ୍ୟୁତ୍ତର ଦେଉଛି, 'କର୍ମରେ ଯାହା ଲେଖାଥିଲା, ତାହା ହେଲା; ଏବେ ଆଉ କରିବା କଣ ? ଦେଇଥିବା ମନ ତ ଆଉ ଫେରାଇ ହେବ ନାହିଁ; ଯାହା ହେବ ହେଉ' । ଏହାପରି ଗୋକୁଳରେ ଯେ କେତେ ପ୍ରକାର ଗୋଳ ଲାଗିଛି, ତାହା ଆଉ କେତେ କହିବି ? ଦେଖି କି ପୁଣି ଦେହକେ ଏତେ ଦୁଃଖ ସହେ ! ପ୍ରଭୋ, ଶୁଣି ଆପଣ କାଠ ହୋଇଯିବେ, ଗୋକୁଳରେ ଏବେ କମଳପତ୍ର କଉଡ଼ ହୋଇଅଛି; କେତେ ଲୋକ ଖୋଜୁଛନ୍ତି; ପୁଷ୍କରଣୀମାନଙ୍କରେ ଏତେ ପତ୍ର କାହିଁ ? କର୍ପୂର ଚନ୍ଦନ ପାଇଁ ଆଗ ହୋଇ କଉଡ଼ ପଡ଼ୁଛି; ଗନ୍ଧବେଣାମୂଳ କୁତ୍ସିତ ଦ୍ରବ୍ୟ; ସେ ପୁଣି ଆଜିକାଲି ଗୋପରେ ଦୁର୍ମୂଲ୍ୟ; କଏ ବା ତାକୁ ପଚାରୁଥିଲା, ସେ ପୁଣି ଏବେ କଉଡ଼ ଦେଲେ ବି ମିଳୁ ନାହିଁ ! କୁଞ୍ଜବନର ବୃକ୍ଷମାନଙ୍କରେ କେତେ କେତେ ପତ୍ର ପ୍ରସ୍ଫୁଟିତ ହୋଇ ରହିଅଛି; ସେମାନ ତୋଳିବା ତ ଦୂରର କଥା, ଆଖିରେ ଦେଖିବାକୁ ମଧ୍ୟ କେହି ମନ ବଳାଉ ନାହିଁ । ଏହିପରି ସମସ୍ତ କଥା; ମୁଁ ଅତିଅଳ୍ପ କରି କହିଲି । କେବଳ ଆପଣଙ୍କର

ଲୋକ ବୋଲି ମଧ୍ୟସ୍ଥ ଭାବରେ ସେମାନେ ମୋତେ ଯେତେ ଯେତେ କଥା କହିଲେ ତହିଁରୁ ଅଧେ ମୋ କାନରେ ପଡ଼ିଲା, ବାକି ଅଧେ ସେମାନଙ୍କ ଅଧରରେ ଲାଗି ରହିଲା । ଗୋପବାଳାମାନେ ଆପଣଙ୍କର ଆଗମନ ଆଶା-ବିଶ୍ରାମ ଓ ଆପଣଙ୍କୁ କୋଟି କୋଟି ଦଣ୍ଡ ପ୍ରଣାମ କରି ସାଶ୍ରୁନୟନ କ୍ଷଣାବାଣୀରେ କହିଛନ୍ତି 'କେଉଁ ଭାଗ୍ୟରୁ ଆମ୍ଭମାନଙ୍କର ପ୍ରାଣ ନ ଯାଇ ରହିଅଛି, ତାହା ହେ କରୁଣାସିନ୍ଧୁ ଆପଣ କେବଳ ଜାଣନ୍ତି ।"

ଉଦ୍ଧବ ବାକ୍ୟ ଶୁଣି ଗୋପୀନାଥଙ୍କ ଚକ୍ଷୁରୁ ଲୋତକ ଗଳିବାକୁ ଲାଗିଲା । ଦୀର୍ଘନିଃଶ୍ୱାସ ପକାଇ ମାଧବ କହିଲେ, ' "ହେ ଉଦ୍ଧବ, ଯାହା କହିଲ, ସମସ୍ତ ସତ୍ୟ । କଥିତ ବିଚ୍ଛେଦ ଯେଉଁମାନଙ୍କୁ ଯୁଗପରି ଲାଗେ, ସେମାନଙ୍କ ସହିତ ଭେଟ ନ ହେବା ସର୍ବଦା ସମୂହ ଦୁଃଖ ଓ ପରିତାପର ବିଷୟ । ମୋର ପ୍ରାପ୍ତି-ଆଶା-କରତରେ କରତ ହେଲେ ଜନର କେତେ କଷ୍ଟ ନ ହୁଏ ! କରମାଳିକରଣ ଯେପରି କଦାପି ମେରୁ-ଶିଖର ତ୍ୟାଗ କରେ ନାହିଁ, ସେହିପରି ମୋର ମନ ଗୋପୀ ଭକ୍ତମାନଙ୍କୁ କେବେହେଁ ତ୍ୟାଗ କରି ପାରିବ ନାହିଁ; ସେମାନଙ୍କ ଭକ୍ତିରେ ମୁଁ ସର୍ବଦା ଅବହିତ ।"

ଏହିପରି କଥୋପକଥନ କରୁଁ କରୁଁ ରାତ୍ରି ଗମ୍ଭୀର ହେଲା । ଭକ୍ତ ଚନ୍ଦ୍ରାମଣି ଉଦ୍ଧବଙ୍କୁ ସ୍ୱପୁରକୁ ଯିବାପାଇଁ ମେଲାଣି ଦେଇ ମଣୋହି ସାରି ପହୁଡ଼ କଲେ । କଳାକରମୁଖୀ ଗୋପୀଙ୍କ ବିଷୟ ଚିନ୍ତା କରୁଁ କରୁଁ ରାତ୍ରି ଶେଷ ହେଲା ଏବଂ ଶ୍ରୀଜଗନ୍ନାଥଙ୍କର ସିଂହଦ୍ୱାରରେ କମ୍ବୁଧ୍ୱନି ବାଜିଉଠିଲା । ତହୁଁ ନୀଳାଦ୍ରି-ନାଥ ଅପହୁଡ଼ ହୋଇ ନିତ୍ୟ ଧର୍ମ କର୍ମ ବିଧିମତେ ବଢ଼ାଇ ବଡ଼ ଅବକାଶରେ ବିଜୟ କଲେ ଏବଂ ଲୋକମାନେ କୋଟିବ୍ରହ୍ମାଣ୍ଡ-ପ୍ରଭୁ ଜଗନ୍ନାଥଙ୍କ ଦର୍ଶନ କରି ନିଜ ନିଜ ମନୋରଥ ପୂର୍ଣ୍ଣ କଲେ ।

କବିଧୀନକୃଷ୍ଣ କହନ୍ତି, "ସେହି ଜଗନ୍ନାଥହିଁ ରସକଲ୍ଲୋଳରଚୟିତା; ମୁଁ ଲେଖକ ମାତ୍ର; କାବ୍ୟଗୁଣ ଓ କାବ୍ୟପାବାଦ ବିଧି ଏ ଗ୍ରନ୍ଥର ବୈଚିତ୍ର୍ୟ ଓ ବିଶେଷତ୍ୱ ନୁହେଁ; ଏବଂ ଏହାର ଭାଷା ମଧ୍ୟ ଅସଂସ୍କୃତ

ପ୍ରାକୃତ ସମ; ମାତ୍ର ଏଥିରେ ଭକ୍ତିବିଷୟକ ଅନେକ କୌତୁକ କଥା ଅଛି ।" ସୁତରାଂ ହେ ଧୀମାନ୍, ଧୀ-ମନ୍ଦର ପର୍ବତଦ୍ୱାରା ଏ ଗ୍ରନ୍ଥ-ସମୁଦ୍ରକୁ କେବଳ ମନ୍ଥନ କଲେ ଅମୃତ ଜାତ ହେବ । ଏ ଅମୃତ କୋବିଦରୂପୀ ଦେବତା-ମାନଙ୍କୁ ପରମ ସୁଖ ଦାନ କରୁ ଏବଂ ବାଳିଶରୂପୀ ଅସୁରମାନଙ୍କର ଦୃଷ୍ଟି ଆକର୍ଷଣ କରି ତନ୍ନିମିତ୍ତ ଉଦ୍ବେଗ ବର୍ଦ୍ଧନ କରୁ । ଯେଉଁ କୃଷ୍ଣ ସେବକମାନଙ୍କର ଗୋପୀଭକ୍ତି ଅଛି, ସେମାନେ ଛନ୍ଦୋବଦ୍ଧ ରସକଲ୍ଲୋଳକୁ କଣ୍ଠରେ ହାର କରନ୍ତୁ ଏବଂ ଯେଉଁମାନେ ସେ ଭକ୍ତିର ଆସ୍ୱାଦ ପାଇ ନାହାନ୍ତି, ସେମାନେ ଏ ଗ୍ରନ୍ଥ ପାଠକରି ଶ୍ରୀକୃଷ୍ଣକଥାମୃତ ପାନ କରନ୍ତୁ । କପଟୀ କୁଟିଳଜନର ଅମଙ୍ଗଳ ନିଦାନ ଶ୍ରୀକୃଷ୍ଣ ସାଧୁଭକ୍ତମାନଙ୍କର ମଙ୍ଗଳ-କାରଣ ହୁଅନ୍ତୁ ।

କାବ୍ୟ କୁଟିଳବର୍ଣ୍ଣାବଳୀରେ ଲିଖିତ ହେଲେହେଁ ତାହା କବିର ହୃଦୟକୁ ଅବଲମ୍ବନ କରି ଜାତ ହୋଇଥାଏ । ତେଣୁ କୋବିଦ-ହୃଦୟ-ଜଳଦ ବ୍ୟତିରେକେ କାବ୍ୟ-ଇନ୍ଦ୍ରଧନୁର ଭାବ-ବର୍ଣ୍ଣବୈଚିତ୍ର୍ୟ ପ୍ରତିଫଳିତ ଓ ପ୍ରକାଶିତ ହୋଇପାରେ ନାହିଁ, ଏବଂ ପଣ୍ଡିତର ନିର୍ମଳ—ମାନସାଧାର ବ୍ୟତୀତ କବିତ୍ୱର ସ୍ୱଚ୍ଛ-ଶାନ୍ତିଉଦକ ଅନାବିଳ ଭାବରେ ରକ୍ଷିତ ହୋଇପାରେନାହିଁ । ଭବ କବିତ୍ୱ-ତନୟର ମାତା, ଏବଂ କହିବା ଲୋକ ତାହାର ଉପମାତା । ରସିକ-ଗ୍ରହୀତା ଯଦି ତାହାକୁ ସମ୍ୟକ୍ ଆଦର କରେ, ତେବେ ତାହାର ସମ୍ମାନ ଓ ଯୋଗ୍ୟତା ଅନେକ ପରିମାଣରେ ସୁରକ୍ଷିତ ହୁଏ, ନୋହିଲେ, କୁମତି ଓ ମୂର୍ଖ ତାହାର ବୈମାତ୍ରେୟ ଭ୍ରାତା ତୁଲ୍ୟ ଥିବାରୁ ସେ ତାହାଦ୍ୱାରା ପଦେ ପଦେ ଅନାଦୃତ ଓ ନିନ୍ଦିତ ହୁଏ । କବିତ୍ୱ-ମଳୟ ପବନ ରସିକ-ରସାଳତରୁକୁ ପଲ୍ଲବିତ କରେ, ମାତ୍ର ମୂର୍ଖ ଶୁଷ୍କତରୁ ତହିଁରେ କେବେହେଲେ ପତ୍ର ଧାରଣ କରେନାହିଁ । ସ୍ତ୍ରୀ ପୁରୁଷମାନଙ୍କର ସରସଭାବ ଯେପରି ନପୁଂସକର ମନରେ ସ୍ଥାନ ପାଏ ନାହିଁ, ସେହିପରି ସରସ ଭକ୍ତି-ଭାବ କୁଟିଳ ଓ ନୀରସ ହୃଦୟରେ ସ୍ଥାନ ପାଏନାହିଁ । କବିତ୍ୱ ରସ ଉତ୍ତମ ଗୋକ୍ଷୀର; ଯେଉଁ ଜନ ତହିଁରେ ସ୍ନେହ-ଶର୍କର ମିଶାଇ ତାହାକୁ କର୍ଣ୍ଣ-ତୁଣ୍ଡରେ ପାନ କରେ, ସେ ତାହାର କିଛି ରସ ଅନୁଭବ

କରେ; ମାତ୍ର କୁତ୍ସିତବୁଦ୍ଧି ନରର କଟୂକ୍ତି ଓ କୁତ୍ସିତ ସେ ଗୋକ୍ଷୀରକୁ ଆମ୍ଳିଲ ଦଧିରେ ପରିଣତ କରେ । କବନ୍ଧ-କୋଷରେ ନାନା ଦ୍ରବ୍ୟ ଥାଏ; ଯାହାର ଜ୍ଞାନ ତନ୍ତ୍ରିରୁ ଗୋଟିଏ ସୁଦ୍ଧା ଦ୍ରବ୍ୟ ସ୍ପର୍ଶ କରି ନ ପାରେ, ସେପରି ଲୋକ ଯଦି ନିର୍ଲଜ୍ଜଭାବରେ ସେ କୋଷର ଅଧିକାରୀ ହୁଏ, ତେବେ ଚୌର୍ଯ୍ୟ ପଡ଼ିଗଲେ ସେ ଚୋରଟିର ସୁବ୍ୟବହାର ପରିବର୍ତ୍ତରେ ଅପବ୍ୟବହାର ହିଁ ସହଜରେ କରିଥାଏ ।

କବିଙ୍କର ଆନ୍ତରିକ ପ୍ରାର୍ଥନା, "ହେ ସାଧୁଜନମାନେ ! କର ଯୋଡ଼ି କହୁଛି, ମନରେ କ୍ରୋଧ ଓ ଅଭିମାନକୁ ସ୍ଥାନ ଦିଅନାହିଁ । ସର୍ବଦା କରୁଣା-ହୃଦୟ ହୁଅ । କୃଷ୍ଣକଥାରେ ମନ ଏକ କର, ଧନ ଦରିଦ୍ରକୁ ଦାନ ଦିଅ । ସାଧୁସଙ୍ଗ କର । କୁଟିଳ ଲୋକର ପାଖକୁ ଯାଅ ନାହିଁ । କୋମଳ-ସ୍ୱରରେ କଥାମାନ କହ । କୃଷ୍ଣ-ଭକ୍ତଜନ-ମନ-ମୋହନ ହୁଅ । କୃଷ୍ଣଙ୍କୁ ଧ୍ୟାନ କର ଏବଂ କୃଷ୍ଣଚରିତାମୃତ ପାନକର । ଏମାନ ଏହି ମୁହୂର୍ତ୍ତରୁ ସାଧିବାକୁ ତତ୍ପର ହୁଅ, କାରଣ ଜୀବନ କହୁଁ’ କେତେବେଳେ ଗ୍ରୁଲି ଯିବନ୍ତି । କାଳିନ୍ଦୀ-ଜଳ-କଲ୍ଲୋଳରଙ୍ଗୀଯୋ କଦମ୍ବ-ତରୁତଳତ୍ରିଭଙ୍ଗୀଯୋ କୁମୁଦବନ୍ଧୁ-ମୁଖମଣ୍ଡଳୀଯୋ ଓ କମନୀୟବନ ଫୁଲମାଳୀଯୋ ଶ୍ରୀକୃଷ୍ଣ କମଳ-ଇନ୍ଦିରାକର ତପନ ତୁଲ୍ୟ ସକଳ ସାଧୁଭକ୍ତମାନଙ୍କ ହୃଦୟରେ ନିଜର ମଦନ-ମୋହନସଚ୍ଚିଦାନନ୍ଦ ମୂର୍ତ୍ତି ପ୍ରକାଶ କରି ଓ ଗନ୍ତବ୍ୟ ପ୍ରେମ-ପଥ ପ୍ରଦର୍ଶନ କରି ଭକ୍ତମାନଙ୍କର ମନୋବାଞ୍ଛା ପୂର୍ଣ୍ଣ କରନ୍ତୁ ।"

ଓଁ ତତ୍ସତ୍



ଶାନ୍ତିଃ ଶାନ୍ତିଃ ଶାନ୍ତିଃ

ସମାପ୍ତ ।

Printed by B. S. Das, Mukur Press, Cuttack. 1925.

# ଶୁଦ୍ଧି ପତ୍ର ।

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୭ | ୨୭ | ଚଲୂ | ଚଳୂ |
| ୭ | ୨୭ | ସେଦର୍ଯ୍ୟ | ସୌଦର୍ଯ୍ୟ |
| ୮ | ୨ | ଅଷ୍ଟଦଶ | ଅଷ୍ଟାଦଶ |
| ୯ | ୧୯ | ରୂପବଣି | ଏ ରୂପବଣି |
| ୧୩ | ୭ | କୂଳ | କୁଳ |
| ୧୩ | ୯ | କୁମାର, | 'କୁମାର |
| ୧୯ | ୨୫ | ଓଁକାର | ଓଁ କାର |
| ୨୧ | ୭ | କ୍ଷୀଣର, | ,କ୍ଷୀଣର |
| ୨୧ | ୧୭ | ଜନସ୍ଥାନ | ଜଳସ୍ଥାନ |
| ୨୩ | ୧୧ | ଶଦ | ଶବ୍ଦ |
| ୨୫ | ୧୦ | ହକ୍ତ | ଭକ୍ତ |
| ୨୭ | ୧୨ | ଛାହା | ଛ'ହାର |
| ୨୮ | ୧୨ | ପ୍ରରୂଷୋ:ତ୍ତମ | ପୁରୁଷୋତ୍ତମ |
| ୩୭ | ୩ | ପୂର | ପୁର |
| ୫୭ | ୨୨ | ଲବଣ | ଲବଣୀ |
| ୫୭ | ୨୫ | ମ୍ନାନ | ସ୍ନାନ |
| ୬୦ | ୮ | ମ'ଝ | ମାଝୀ |
| ୭୧ | ୪ | ହତୋ'ଡ଼ | ହାତୋଡ଼ା |
| ୭୪ | ୮ | ନଶବ୍ଦ | ନିଃଶବ୍ଦ |
| ୯୦ | ୧୮ | ପଦ୍ମୀ | ପଦ୍ମା |
| ୧୧୯ | ୮ | ଲକ୍ଷ୍ମି, | ଲକ୍ଷ୍ମି |
| ୧୨୨ | ୧୩ | ହୁଏ । | ହୁଏ; |
| ୧୩୫ | ୧୮ | କଣରଜଡ | କଣ |